# ସୁମନଶ୍ଚ ମନୋରମା

ଶଶିକାନ୍ତ ଦାସ



# ପୁନଶ୍ଚ ମନୋରମା

ରଚନା :
ଶ୍ରୀ ଶଶିକାନ୍ତ ଦାସ
ଭୂଷ୍ଣାପଡ଼ା
ବାଣପୁର, ପୁରୀ

ପ୍ରକାଶିକା :
ଶ୍ରୀମତୀ ସଂଯୁକ୍ତା ଦେବୀ
ଛନ୍ଦା ପ୍ରକାଶନୀ
ଶ୍ୟାମ ଚନ୍ଦ୍ରିକା
ଯୋବ୍ରା, କଟକ-୭୫୩୦୦୩

ପ୍ରଥମ ପ୍ରକାଶ
୧ । ୧ । ୧୯୯୨

ପ୍ରକାଶ ପରିଚାଳନା
ଶ୍ରୀ ରଜନୀକାନ୍ତ ଦାସ

ପ୍ରଚ୍ଛଦପଟ
ଶ୍ରୀ ଉଦୟ ନାରାୟଣ ଜେନା

ମୁଦ୍ରଣ :
ତରୁପତ୍ର ପ୍ରିଣ୍ଟର୍ସ

ମୂଲ୍ୟ : ପଚିଶିଟଙ୍କା

ନବେବର୍ଷ ତଳେ ତାଙ୍କର ଜନ୍ମ ହୋଇଥିଲା ଏକ ନିପଟ ମଫସଲି ଗାଆଁରେ । ଶିକ୍ଷା ବି ଥିଲା ଅଳ୍ପ । ତଥାପି ରୁଚି, ବିଚାର ଓ ଆଚରଣରେ ସେ ଥିଲେ ବାସ୍ତବିକ୍ ଆଧୁନିକ । ତତ୍କାଳୀନ ପରିବେଶରେ ସେ ଥିଲେ ଏକ ସ୍ୱତନ୍ତ୍ର ମଣିଷ । ମୋର ଜୀବନ ହେଉଛି ତାଙ୍କ ଜୀବନ ଦର୍ଶନର ଏକ ସାମାନ୍ୟ ଫଳଶ୍ରୁତି ମାତ୍ର । ତାଙ୍କର ସ୍ମୃତି ମନକୁ ଆସିଲେହିଁ ଗଭୀର ଭକ୍ତି, ଶ୍ରଦ୍ଧା ଓ କୃତଜ୍ଞତା ବୋଧରେ ମଥା ଅବନତ ହୋଇଯାଏ ।

ସେହି ମହାନ୍ ପୁରୁଷ ମୋର ପିତା ସ୍ୱର୍ଗୀୟ ନୀଳକଣ୍ଠ ଦାସଙ୍କ ଉଦ୍ଦେଶ୍ୟରେ ମୋର ଏହି ବହିଟିକୁ ଉତ୍ସର୍ଗ କରୁଛି ।



# ସୂଚୀ





ଏହି ଲେଖକଙ୍କର ପ୍ରକାଶିତ ଅନ୍ୟ ବହି

**ମନର ଆକାଶ ମୋର** (କବିତା ସଂକଳନ)

**ବର ପୂର୍ବୀ** (କବିତା ସଂକଳନ) ।

# ବୀଚିମାଳାର ଚିଠି

ବୀଚିମାଳା ନାମରେ ସେଦିନ ତିନିଖଣ୍ଡ ଚିଠି ଆସିଥିଲା । ତିନୋଟି ଲଫାପା । ପ୍ରତ୍ୟେକଟି ଉପରେ ତାର ନାମ ଓ ଠିକଣା ସୁନ୍ଦର ଅକ୍ଷରରେ ଲେଖା । ଅକ୍ଷର ଦେଖିହିଁ ବୀଚିମାଳା ଜାଣି ପାରିଥିଲା ପତ୍ର ପ୍ରେରକ କିଏ ।

ତିନୋଟି ଚିଠି ଆସିଥିଲା ଗୋଟିଏ ସ୍ଥାନରୁ, କିନ୍ତୁ ତିନିଜଣ ଭିନ୍ନ ଭିନ୍ନ ପୁରୁଷଙ୍କ ଠାରୁ । ସେମାନେ ହେଲେ ରାଜେଶ୍ୱର, ବ୍ରଜେଶ୍ୱର ଓ ବୀରେଶ୍ୱର । ସେମାନେ ତିନିଜଣଙ୍କ ପ୍ରତ୍ୟେକଙ୍କୁ ସେ ଭଲଭାବରେ ଜାଣେ । ସେମାନଙ୍କ ପରିବାର ଭିତରେ ବୀଚିମାଳା ଦୀର୍ଘ ଦୁଇବର୍ଷ କଟାଇଛି । ସେମାନେ ତାର ନିକଟତମ ଆତ୍ମୀୟ । ରାଜେଶ୍ୱର ବୀଚିମାଳାର ବଡ଼ ଭଉଣୀ ଊର୍ମିମାଳାର ସ୍ୱାମୀ । ବୀଚିମାଳାର ବାପା ଅଧ୍ୟାପକ ହିତେନ୍ଦ୍ର ବାବୁ ଦୁଇବର୍ଷ ପାଇଁ ବିଦେଶକୁ ଚାଲିଯିବାରୁ ବୀଚିମାଳାକୁ କଟକ ଛାଡ଼ି ପୁରୀରେ ଯାଇ ଦୁଇବର୍ଷ ପଢ଼ିବାକୁ ପଡ଼ିଲା । ବୀଚିମାଳା ଅବଶ୍ୟ ହଷ୍ଟେଲରେ ରହି କଟକରେ ପଢ଼ିପାରିଥାନ୍ତା । କିନ୍ତୁ ଊର୍ମି ଓ ରାଜେଶ୍ୱର ତାକୁ ପୁରୀ ନେଇଗଲେ ।

ଦୁଇବର୍ଷର ପଢ଼ାପରେ ଶେଷ ପରୀକ୍ଷା ଦେଇ ବୀଚିମାଳା ଘରକୁ ଫେରି-ଆସିଥିଲା । ଆଉ ତାକୁ ପୁରୀଯିବାକୁ ହେବନାହିଁ । ହିତେନ୍ଦ୍ରବାବୁ ଏହାଭିତରେ ବିଦେଶରୁ ଫେରିଆସିଛନ୍ତି । କଟକକୁ ଆସିବାର ପ୍ରାୟ ସପ୍ତାହକ ପରେ ତା ପାଖକୁ ଚିଠି ଲେଖିଛନ୍ତି ତିନିଭାଇ ରାଜେଶ୍ୱର, ବ୍ରଜେଶ୍ୱର ଓ ବୀରେଶ୍ୱର ।

ବୀଚିମାଳା ପ୍ରଥମେ ସବା ସାନଭାଇ ବୀରେଶ୍ୱରର ଚିଠିଟି ଖୋଲି ପଢ଼ିଲା । ବୀରେଶ୍ୱର ପୁରୀରେ ଥିଲା ତାର ସହପାଠୀ । ଅବଶ୍ୟ ବୀରେଶ୍ୱର ଥିଲା ବିଜ୍ଞାନର ଛାତ୍ର । ପ୍ରାୟ ସମବୟସୀ । ବୀରେଶ୍ୱର ଲେଖିଥିଲା ।

୨

"ହେ ଏକ ମଧୁସାଗରର ବୀଚିମାଳା',

ତୁମ ପାଖକୁ ମୋର ଏ ଚିଠି ଲେଖିବାର ଦୁଃସାହସକୁ କ୍ଷମା କର । ଚିଠି ନଲେଖି ରହିପାରିଲି ନାହିଁ । ଅନ୍ତରର ଅଙ୍କୁରିତ ଭାବନାକୁ ଭାଷାରେ ପ୍ରକାଶ କରି ନିଜକୁ ଟିକିଏ ଶାନ୍ତ କରିବାକୁ ମୋର ଏ ଚେଷ୍ଟା ତୁମ ମନରେ କିଛି ପ୍ରଭାବ ପକାଇ ନପାରେ । ତଥାପି ଚିଠି ଲେଖି ବିରକ୍ତ କରୁଛି ।

ବୀଚିମାଳା, ମୁଁ ଜାଣେ ତୁମେ ଏକ ମହାସାଗରର ଉଚ୍ଛ୍ୱସିତ ଚଞ୍ଚଳ ଚପଳ ବୀଚିମାଳା । ତୁମକୁ ଛୁଇଁ ହୁଏ, କିନ୍ତୁ ବାନ୍ଧିରଖିବା ସହଜ ନୁହେଁ । ତଥାପି ମନୁଷ୍ୟ ବଡ଼ ଅବୋଧ । ସେ ଦୁରାଶାକୁ ହିଁ ପୋଷଣ କରେ । ଆନନ୍ଦର ଆଶାରେ କଷ୍ଟ ବରଣ କରେ । ମୁଁ ମୋର ସେହିପରି ଏକ ଅବୋଧ ଅବାଧ୍ୟ ଆଶାକୁ ପ୍ରକାଶ ନକରି ରହିପାରୁ ନାହିଁ ।

ଦୀର୍ଘ ଦୁଇବର୍ଷ ଧରି ତୁମ ସହିତ ଘନିଷ୍ଠ ଭାବରେ ମିଳାମିଶା କରିଛି । ଦୁହେଁ ଯାକ ସାଙ୍ଗହୋଇ ପାଠ ପଢ଼ିଛେ । ସାଙ୍ଗହୋଇ କଲେଜ ଯାଇଛେ । ପାଠ ଅପାଠ କେତେ ବିଷୟରେ କେତେ ଆଲୋଚନା, ଯୁକ୍ତିତର୍କ କରିଛେ । ଭାଇଙ୍କର ଶାଳୀବୋଲି ତୁମକୁ କେତେ ପରିହାସ କରିଛି । କିନ୍ତୁ ମୁଁ କଣ ପ୍ରକୃତରେ ସେତିକି ସମ୍ପର୍କ ଭିତରେ ନିଜକୁ ପୂର୍ଣ୍ଣ ପ୍ରକାଶ କରିପାରିଛି ? ଆକଣ୍ଠ କୁଣ୍ଠାକୁ ଅତିକ୍ରମ କରି ସ୍ୱୀକାର କରୁଛି, କରିନାହିଁ । ଏ ସମସ୍ତ ବାହାରେ ମୋର ଅନ୍ତରର ମନୁଷ୍ୟଟି ରହିଯାଇଛି । ସେ କେବଳ ତୁମକୁ ଦେଖିଛି । ତୁମର ଅସୀମ ରୂପରାଶି ଅବଲୋକନ କରି ମୁଗ୍ଧ ହୋଇଛି । ବୀଚିମାଳା, ମୁଁ ବହୁତଥର ଭାବିଛି ମନଖୋଲି କହିବି, ସୁନ୍ଦରୀ ବୀଚିମାଳା, ତୁମେ ଅତୁଳନୀୟା, ତୁମେ ଅଦ୍ୱିତୀୟା, ତୁମେ ଅନୁପମା । କିନ୍ତୁ ସେ କଥା କେବେ କହିପାରିନାହିଁ । ତୁମର ସରଳ ନିରାଡମ୍ବର ବେଶ, ସହଜ ମଧୁର ବ୍ୟବହାର ମୋ ଅନ୍ତରକୁ ଅସୀମ ଆନନ୍ଦରେ ପ୍ଲାବିତ କରିଛି । ମୋ ହୃଦୟକୁ ପଲ୍ଲବିତ କରିଛି । ତୁମର ଚରଣ ତଳେ ମୋର ସମସ୍ତ ସତ୍ତା ସ୍ୱତଃ ନିବେଦିତ ହୋଇଯାଇଛି ନୀରବରେ । ଧୀରେ ଧୀରେ ଏକ ଗଭୀର ପ୍ରେମ ଗଢ଼ିଉଠିଛି ମୋ ଭିତରେ । ମୋର କେତେ କବିତାର ପ୍ରେରଣା ତୁମେ, କେତେ ଗଳ୍ପର ନାୟିକା ତୁମେ । କେବଳ ତୁମକୁହିଁ ମୁଁ ଭିନ୍ନ ଭିନ୍ନ ଭାବରେ ଅଙ୍କନ କରିଛି ।

କିନ୍ତୁ ଖୁବ୍ ନିକଟରେ ଥାଇ ବି ତୁମେଥିଲ ସୁଦୂର । ଆଜି ତ ତୁମେ ପ୍ରକୃତରେ ବହୁ ଦୂରରେ କିନ୍ତୁ ତୁମର ସ୍ମୃତି ଓ ସ୍ୱପ୍ନ ଭିତରେ ତୁମେ ଯେ ମୋର କେତେ ନିକଟତମ ତାହା ମୁଁ ହୃଦୟଙ୍ଗମ କରିଛି । ଏଇ ଘର ଭିତରେ ତୁମେ ଥିଲ, ତୁମର ଜ୍ୟୋତି ବିକୀରଣ କରୁଥିଲ । ତୁମର ଅନୁପସ୍ଥିତି, ତୁମର ଅଭାବ ଆଜି

କେହ୍ବ ବୋଧ କରୁଛୁ କ ନା ମୁଁ ଜାଣେନା; କନ୍ତୁ ମୋର ହୃଦୟ୍ହ ହାହାକାର କର ଉଠୁଛୁ । ମୋ ଅନ୍ତରର ବେଦନା କପର ଭାଷାରେ ପ୍ରକାଶ କରବ ଜାଣେନା ।

ବଡ଼ ଦୁଃସାହସ କର ଏ ଚଠି ଲେଖିଲ । ମୋର ତ୍ରୁଟି ମାର୍ଜନା କରବ । ତୁମେ ଯିବା ପରେ ପରେ ଲେଖା ମୋର ଗୋଟିଏ କବତାରୁ କେତୋଟି ପଦ ଉଦ୍ଧାର କର ଏ ଚଠି ଶେଷ କରବାକୁ ଯାଉଛୁ ।

"ଝର୍କାର ରେଲିଂ ଦେଇ ମୁଁ ତାକୁ ଦେଖିଲ
ଓ ଆଶ୍ଚର୍ଯ୍ୟ ହେଲ ।
ଲମ୍ବା ଲମ୍ବା ତାର ଛାଇ ଛୁଇଁ ଛୁଇଁ ଗଲ
ମୋ ଝର୍କାର ପ୍ରତଟି ରେଲିଂ ।
ଏବଂ ତାର ଫାଙ୍କ ଦେଇ ଆମ ପୁଷି ବଲେଇଟି ପର
ସେ ପଶି ଆସିଲ ।
ଏବଂ ଦେଖୁ ଦେଖୁ ଲୁଚଗଲ
ଟେରେଲନ୍ ଜାମା ଭେଦ ମୋ ବୁକୁ ଭତରେ
ମୁଁ ତାକୁ ଖୋଜଲ କେତେ, ଅଣ୍ଡାଳିଲ
ଖଟତଳେ, ଆଲମାରି ପଛେ ।
କନ୍ତୁ ସେଇ ଟିକଏ ଅସାବଧାନତା ଭତରେ
ପିଇଦେଲା ସିଏ ମୋର
ସବୁତକ ଆଉଟା ଦୁଧ ।
ମୋ ମନର ଖାଲି ଗିନାଟାକୁ ଦେଖି
ମୁଁ କନ୍ତୁ ରାଗିପାରଲ ନାହିଁ ।
ବରଂ ଖୁସି ହେଲ; କହଲ, ଭଲହେଲ
ସବୁ ଭଲ ହେଲ ।"

ସୀତମାଲା, ଆଶା କରବା ମୋର ଅବୋଧତା । ପ୍ରତ୍ୟାଶା କରବା ମୋର ଅବୋଧତା । ତଥାପି ଆଶା ଓ ପ୍ରତ୍ୟାଶା ମୁଁ ଉଭୟ କରୁଛୁ । ତୁମଠାରୁ ଚଠି ଖଣ୍ଡିଏ ପାଇଲେ ଧନ୍ୟ ହେବ ।

ତୁମେ ଏ ଚିଠି କିପରି ଗ୍ରହଣ କରିବ ଜାଣେନା । ମନରେ ମୋର ନାନା ପ୍ରକାର ସଂଶୟ ଓ ଆଶଙ୍କା । ମୋର ସମସ୍ତ ଦୋଷ କ୍ଷମା କରିବ । ମୁଁ ବାମନ ହୋଇ ଚନ୍ଦ୍ରକୁ ଧରିବାକୁ ଚେଷ୍ଟା କରୁଛି ନା !

କେତେ କଣ ଭାବନା ମନକୁ ଆସୁଛି । ତୁମର ଚିଠି ପାଇଲେ ନିଜକୁ ଉନ୍ମୁକ୍ତ କରି ଧରିବାକୁ ଭରସା ପାଇବି । ।ଇତି ।

ତୁମର ଭୀରୁ ପ୍ରଣୟୀ ବୀରେଶ୍ୱର" ।

ବୀରେଶ୍ୱରର ଚିଠି ପଢ଼ିସାରି ବୀଚିମାଳା ଟିକିଏ ହସିଲା ଏବଂ ଚିଠିଟିକୁ ପୁଣି ଲଫାଫା ଭିତରେ ରଖିଦେଇ ବ୍ରଜେଶ୍ୱରର ଚିଠିଟି ଖୋଲିଲା । ବ୍ରଜେଶ୍ୱର ଇଂଜିନିୟର । ଭୁବନେଶ୍ୱରରେ ତାର ଚାକିରି । କିନ୍ତୁ ବହୁତ ସମୟରେ ସେ ଟୁର୍ ଯାଏ । ଦେଖିବାକୁ ସୁନ୍ଦର ଓ ସ୍ୱାସ୍ଥ୍ୟବାନ୍ । ଅବିବାହିତ । ଭଲ ପାତ୍ର ବୋଲି ବିବାହ ବଜାରରେ ତାର ଅନେକ ମୂଲ୍ୟ । କେତେ ବଡ଼ ବଡ଼ ଘରୁ ତା ପାଇଁ ବିବାହ ପ୍ରସ୍ତାବ ସବୁ ଆସୁଥିଲା । କିନ୍ତୁ ତାର ଗୋଟିଏ କଥା ସେ ବର୍ତ୍ତମାନ ବିବାହ କରିବ ନାହିଁ । ବୀଚିମାଳା ପରିହାସ କରି କହେ, "ବ୍ରଜଭାଇ, ତୁମେ ନିଶ୍ଚୟ କେଉଁଠି ବୁଡ଼ି ବୁଡ଼ି ପାଣି ପିଉଚ । ସେଇ ଅସଲ କଥାଟି ନକହି ଏଣ୍ଡେତେଣ୍ଡେ କଥା କାହିଁକି କହୁଚ । ରାଜଭାଇ ବା ଅପା କେହି ଅମତ ହେବେ ନାହିଁ ମ । ମନ ଖୋଲି ତୁମ ପ୍ରିୟାଙ୍କ ସମ୍ବାଦଟି ଦିଅ । ଅନ୍ତତଃ ମତେ କହ, ମୁଁ ଦୌତ୍ୟ କରିବାକୁ ପ୍ରସ୍ତୁତ ଅଛି ।"

ବ୍ରଜେଶ୍ୱର କହେ, "କହିବି, ନିଶ୍ଚୟ କହିବି । ଶୁଣିବାକୁ ହେଲେ ଧୈର୍ଯ୍ୟ ଆବଶ୍ୟକ ।" ପ୍ରତିବେଶୀ ମାଉସୀ କହନ୍ତି, "ବ୍ରଜ ସହିତ ବୀଚିର ରାଜଯୋଟକ ହେବ ।"

ବୀଚିମାଳାକୁ ବହୁତ ପରିହାସ କରେ ବ୍ରଜେଶ୍ୱର । ଉର୍ମି ସବୁ ଶୁଣି କହେ 'ବ୍ରଜ, ସେଇ ବୀଚିଟିକୁ ବାହା ହୋଇପଡ଼ । କିନ୍ତୁ ବାପା ତୁମକୁ ଯୌତୁକ ଫୌତୁକ କିଛି ଦେଇପାରିବେ ନାହିଁ । ଖାଲି ତୁଳସୀ ପତ୍ର ସହିତ କନ୍ୟାଦାନ କରିବେ । ତୁମେ ଯଦି ରାଜକନ୍ୟା ସହିତ ଅର୍ଦ୍ଧରାଜ୍ୟ ଖୋଜୁଥିବ ତାହା ପାଇବ ନାହିଁ ।'

ବ୍ରଜେଶ୍ୱର ଉତ୍ତର ଦିଏ, 'ତୁମର ଏ କଷ୍ଟିନିନ୍ଦ୍ୟା ସୁନ୍ଦରୀ ଭଉଣୀକୁ ମୁଁ ବାହାହେବାକୁ ଧାଉଁଛି ।

ଉର୍ମିମାଳା ପ୍ରତିବାଦ କରେ, "କଣ କହିଲ କଷ୍ଟିନିନ୍ଦ୍ୟା ସୁନ୍ଦରୀ ? ବୀଚିପରି ସୁନ୍ଦରୀ ଝିଅ ତୁମେ ଆଉ ଦେଖିଛ ନା ?

ବ୍ରଜେଶ୍ୱର କହେ, "ବହୁତ—ଏଇ ଧର ଯେମିତି ନରେଶବାବୁଙ୍କ ଝିଅ କାମିନୀ ।"

ଊର୍ମିମାଳା ତ ହସେ । ଗୀତମାଳା ବି ନ ହସି ରହିପାରେ ନାହିଁ । କାମିନୀ ଯେ ଦେଖିବାକୁ ଅତ୍ୟନ୍ତ ଅସୁନ୍ଦର କିଏ ନ ଜାଣେ ।

ଗୀତମାଳା କହେ, 'ବ୍ରଜଭାଇ, ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି ତୁମକୁ ସେଇ କାମିନୀଟି ପ୍ରାପ୍ତ ହେଉ ।'

ପୁରୀରୁ ଆସିବା ଦିନ ଗାଡ଼ି ଛାଡ଼ିବାର ଅଳ୍ପ ସମୟ ଆଗରୁ ବ୍ରଜେଶ୍ୱର ଗୀତମାଳାକୁ ଟିକିଏ ଏକା ପାଇ କହିଥିଲା, "ଗୀତ, ତୁମକୁ ମୋର ଗୋଟିଏ କଥା କହିବାର ଥିଲା........"

ଗୀତ କହିଲା, 'କଣ କହୁନା' ।

ଟିକିଏ ନୀରବ ରହି ବ୍ରଜେଶ୍ୱର କହିଲା, 'ନା ଏଇକ୍ଷଣି ନୁହେଁ । ପରେ ଚିଠିରେ ଲେଖିବି ।

ସେଇ ଚିଠି ଲେଖିଛି ବ୍ରଜେଶ୍ୱର ।

"ଶ୍ରୀମତୀ ଗୀତମାଳା ଦେବୀ ସୁଚରିତାସୁ,

ଚିଠି ଦେବି ବୋଲି କହିଥିଲି ବୋଲି ଏ ଚିଠି ଲେଖୁଛି । ନୂଆବୋଉଙ୍କୁ ଛାଡ଼ି କୌଣସି ନାରୀ ପାଖକୁ ମୁଁ କେବେ ଚିଠି ଲେଖିନାହିଁ । ଚିଠିଲେଖିବାର ପ୍ରୟୋଜନ କେବେ ପଡ଼ିନାହିଁ । ତେଣୁ ତୁମ ପାଖକୁ ଚିଠି ଲେଖିବାବେଳେ ବଡ଼ ଅସ୍ୱସ୍ତି ବୋଧ କରୁଛି । ମୋର ବଡ଼ଭାଇ କବି । ସାନଭାଇ ମଧ୍ୟ କବିତା ଗଳ୍ପ ଲେଖେ ବୋଲି ଶୁଣିଚ । କିନ୍ତୁ ମୁଁ ଏସବୁ ସାହିତ୍ୟଠାରୁ ଦୂରରେ ଥାଏ । ପିଲାଦିନୁ ଅଙ୍କପ୍ରତି ମୋର ଯେତେ ଆକର୍ଷଣ ପ୍ରେମ କବିତା କଥା ଛାଡ଼, ଡିଟେକ୍ଟିଭ୍ ଉପନ୍ୟାସ ପାଇଁ ମଧ୍ୟ ସେତିକି ଆକର୍ଷଣ ନଥିଲା । ତେଣୁ ମୋ ଚିଠିରେ ରସ ପାଇବ ନାହିଁ ।

ଷ୍ଟେସନ୍‌ରେ ତୁମକୁ ଗୋଟିଏ କଥା କହିବାର ଥିଲା ବୋଲି କହିଥିଲି । ସେ କଥାଟି କହିବି କହିବି ବୋଲି ମୁଁ ଗଲା ୨।୩ ମାସ ଧରି ଭାବୁଛି । କିନ୍ତୁ କେଜାଣି କାହିଁକି କହିପାରିନାହିଁ । କଥାଟା କିପରି କହିବାକୁ ହେବ ଜାଣେନାହିଁ ବୋଲି ବୋଧହୁଏ କହିପାରୁନାହିଁ । ମୋ ଭିତରେ ଭୀଷଣ ଅସୁବିଧା ବହୁତ

ଦିନପରେ ବୋଧ କରୁଛି । ମ୍ୟାଥ୍‌ମେଟିକ୍‌ସ୍‌ର ଗୋଟାଏ ପ୍ରୋବ୍ଲେମ୍ ସମାଧାନ କରି ନ ପାରିଲେ ମନଟା ଯେପରି ଛଟପଟ ହୁଏ, ମୋ ମନକଥା କହି ନପାରି ମୁଁ ବି ସେପରି ଛଟପଟ ହେଉଛି । ଠିକ୍ ହେଉ ବା ଭୁଲ ହେଉ ଏବେ ମୋ ମନ କଥାଟା ତୁମକୁ କହି ଦେଉଛି ।

ନୂଆବୋଉ ଅନେକ ଥର ଥଟ୍ଟା ପରିହାସ ରେ ତୁମ ସହିତ ମୋର ବିବାହ କଥା କହିଛନ୍ତି । କିନ୍ତୁ ସେ ଯଦି ଅନ୍ୟ କୌଣସି ବିବାହ ପ୍ରସ୍ତାବ କଥା ନକହି. ତୁମ ସହିତ ମୋ ବିବାହ ପ୍ରସଙ୍ଗ ସିରିଅସ୍‌ଲି କହିଥାନ୍ତେ ତେବେ 'ମୁଁ ବର୍ତ୍ତମାନ ବାହାହେବି ନାହିଁ' ନ କହି କହିଥାନ୍ତି 'ଶୁଭସ୍ୟ ଶୀଘ୍ରମ୍' କିନ୍ତୁ କାହିଁକି କେଜାଣି ନୂଆବୋଉ କେବେ ସେପରି କଥା କହି ନାହାନ୍ତି । ବୋଧହୁଏ ଗୋଟିଏ ଘରେ ଦୁଇ ଭଉଣୀଙ୍କର ବିବାହଟାକୁ ସେ ପସନ୍ଦ କରୁ ନଥିବେ । କିମ୍ବା ଏ ବିବାହରେ ଭାଇଙ୍କର ମତ ନଥିବ । ତୁମର ବାପା ଅମତ ହେବା ବି ଅସମ୍ଭବ ନୁହେଁ । କିନ୍ତୁ ମୋରମନେହୋଇଛି, ସବୁ ବାଧା ଲଙ୍ଘନ କରିଯାଇପାରେ । କେବଳ ଗୋଟିଏ କଥା ଭାବି ମୁଁ ଶଙ୍କି ଯାଉଛି ତାହା ହେଉଛି ତୁମର ଅମତ । ତୁମ ମନକଥା ମୁଁ କେବେ ଜାଣି ପାରିନି । କିପରି ଜାଣିବାକୁ ହେବ ଭାବିପାରିନି । ବହୁତଥର ଭାବିଛି, ତୁମକୁ ପଚାରି ବୁଝିବି । କିନ୍ତୁ ଭାରି ସଙ୍କୋଚ ଲାଗେ । ପଚାରିବା ସମୟ ଗଡ଼ି ଗଡ଼ି ଯାଉଛି ଷ୍ଟେସନ ପର୍ଯ୍ୟନ୍ତ । ମନେ ମନେ ସିଦ୍ଧାନ୍ତ କରିଥିଲି ସେଇ ଶେଷ ମୁହୂର୍ତ୍ତରେ ପଚାରିଦେବି । ତୁମେ ମନା କରି ଦେବାର ଭୟ ତ ରହିଥିଲା । ତୁମେ ଯଦି ମନା କରିଦିଅ, ତାହାହେଲେ ତା ପରେ ତୁମକୁ ମୁହଁ ଦେଖାଇବା କଷ୍ଟ ହେବ । ତେଣୁ ଷ୍ଟେସନର ସେଇ ଶେଷ ମୁହୂର୍ତ୍ତଟିକୁ ଉପଯୁକ୍ତ ସମୟ ବୋଲି ଠିକ୍ କରିଥିଲି । କିନ୍ତୁ ମନଟାକୁ ଟାଣକରି ପଚାରିପାରିଲି ନାହିଁ । ଜୀବନରେ ଏ ଏକ ନୂତନ ଅନୁଭୂତି ହେଲା । ଗୋଟିଏ ନାରୀ ପାଖରେ ନିଜ ମନକଥା ପ୍ରକାଶ କରିବାପରି କଠିନ କାମ ଆଉ କିଛି ନାହିଁ । ଯାହାହେଉ ଏ ଚିଠି ଲେଖି ସେଇ ସଙ୍କଟରୁ ପାରି ହେଉଛି । ମୁଁ ତୁମକୁ ବିବାହ କରିବାକୁ ଚାହେଁ ଏ କଥାଟା ନ ଲେଖିଥିଲେ ବି ତୁମେ ମୋର ମନକଥାଟା ବୁଝିପାରିଥାନ୍ତ । ତଥାପି ସ୍ପଷ୍ଟ ଭାବରେ ଲେଖିଲି । ତୁମର ମତାମତ ଜାଣିଲେ ନୂଆବୋଉଙ୍କ ପାଖରେ ଜଣାଇବି । ତୁମେ ମତେ ବିବାହ କଲେ ସୁଖୀ ହେବ କି ନା ଜାଣେନା । ମୁଁ କିନ୍ତୁ ବହୁତ ସୁଖୀ ହେବି । ହଁ ଆଉ ଗୋଟିଏ କଥା । ମୁଁ ଯୌତୁକ ଲୋଭୀ ନୁହେଁ । ତେଣୁ ତୁମ ବାପାଙ୍କୁ ମୋ ପରି ଗୋଟେ ଇଂଜିନିୟରର ବରପାଣ ପାଇଁ ସର୍ବସ୍ୱ ଦାନ କରି ଋଣଗ୍ରସ୍ତ ହେବାକୁ ପଡ଼ିବ ନାହିଁ । ନିଜ ବିଷୟରେ ପଦେ ସୁପାରିସ୍ କରିଥାଏ — ଈଶ୍ୱରଙ୍କ ନାମରେ ଶପଥ କରି କହୁଛି ମୋର ଚରିତ୍ର କଳଙ୍କ ଶୂନ୍ୟ ।

ତୁମର ମତାମତ ସ୍ପଷ୍ଟ ଭାବରେ ଜଣାଇବ । ଶୀଘ୍ର ଜଣାଇ ପାରିଲେ ଭଲ ।

ଇତି

ତୁମର

ପାଣି ପ୍ରାର୍ଥୀ ବ୍ରଜେଶ୍ୱର ।"

ବ୍ରଜେଶ୍ୱରର ଚିଠିଟି ପଢ଼ି ନୀଳମାଳା ଟିକିଏ ଗମ୍ଭୀର ହୋଇଗଲା । କିନ୍ତୁ ସେ ବିଷୟରେ ଆଉ ବିଶେଷ ମନଯୋଗ ନ କରି ତୃତୀୟ ପତ୍ରଟି ଖୋଲିଲା ।

"ସ୍ନେହର ନୀଳି,

ତୁ ଯିବାହିନହିଁ ତୋ ପାଖକୁ ଚିଠି ଦେବି ବୋଲି ଭାବିଥିଲି । କିନ୍ତୁ ତା ହୋଇପାରିଲା ନାହିଁ । ତୁ ଯିବାର ୫ଦିନ ପରେ ଆଜି ଚିଠି ଲେଖୁଛି । କିପରି ଯାଇ ପହଁଚିଲୁ । ବାଟରେ କିଛି ଅସୁବିଧା ହୋଇ ନାହିଁ ତ ?

ତୋ ପାଖକୁ କଣ ଲେଖିବି ।

ମୋ ଜୀବନରେ ଅନେକ ବ୍ୟର୍ଥତା; ମୋ ଭିତରେ ଅନେକ ଶୂନ୍ୟତା । ମୋ ପାଇଁ ମୋର ଜୀବନ ଗୋଟିଏ ଭଙ୍ଗଛନ୍ଦ, ଭାବକ୍ଲିଷ୍ଟ କବିତା । ସେଥିରେ ନିଜେ ଉଚ୍ଛ୍ୱସିତ ହେବାର ଯେପରି କିଛି ନାହିଁ । କାହାକୁ ଆନନ୍ଦ ବିତରଣ କରିବାର ଅବକାଶ ବି ନାହିଁ । ମୁଁ ଗୋଟାଏ ଅନ୍ଧ ପ୍ରବାହରେ ଭାସି ଚାଲିଛି ।

ମତେ ଅଠରଶ ବର୍ଷ ବୟସ ହେଲାଣି । ଅକାଳରେ ବାଳ ପାଚିଲାଣି । ଅସମୟରେ ମନ ଭିତରକୁ ବାର୍ଦ୍ଧକ୍ୟ ସ୍ପର୍ଶ କଲାଣି । ବହୁ ପ୍ରକାର ଗୁରୁ ଜଂଜାଳ ଭିତରେ ନିଜକୁ ଅନୁଶୀଳନ କରିବାକୁ ମୁଁ ଅବସର ପାଇନାହିଁ । ଏମିତି ଯାଉ ଯାଉ ଦିନେ ଏ ଜୀବନରେ ଗତି ବନ୍ଦ ହୋଇଯିବ । ତା ପରେ ଅବଶ୍ୟ ଅସରନ୍ତି ଅବସର ମିଳିବ । କିନ୍ତୁ ଏଇ ପୃଥିବୀ ଓ ଏଇ ଜୀବନ ମିଳିବ ନାହିଁ । ସତରେ ନୀଳି, ଏ ପୃଥିବୀଟି ଭାରି ସୁନ୍ଦର । ଏହାକୁ ଛାଡ଼ି କୁଆଡ଼େ ଯିବାକୁ ଇଚ୍ଛା ହୁଏ ନାହିଁ । କିନ୍ତୁ ଦିନେ ଏହାକୁ ଛାଡ଼ିଯିବାକୁହିଁ ହେବ । ବେଳେ ବେଳେ ମୋର ମନେହୁଏ ଜୀବନର ଆରପାରିରେ ସେ ମୃତ୍ୟୁର ପୃଥିବୀ ବୋଧ ହୁଏ ଏଇ ପୃଥିବୀ ଅପେକ୍ଷା ଅଧିକ ସୁନ୍ଦର ହୋଇଥିବ । ତା ନ ହୋଇଥିଲେ ଭଗବାନ ଜୀବନକୁ କାହିଁକି ମୃତ୍ୟୁରେ ସମାପ୍ତ କରନ୍ତେ !

ସବୁବେଳେ ଦାର୍ଶନିକ ପରି କଥା କହେ ବୋଲି ତୋର ଅପା ମୋ ଉପରେ ଚଢ଼େ । ତୁ କିନ୍ତୁ ମୋର ସଶ୍ରଦ୍ଧ ଶ୍ରୋତା । ତେଣୁ ତୋ ପାଖରେ ମୁଁ ଯେପରି ନିଜର ଅନ୍ତର ପୁରୁଷଟିକୁ ଉନ୍ମୁକ୍ତ କରେଇଦିଏ, କାହିଁକି କେଜାଣି ତୋର ଉପସ୍ଥିତି ମତେ ଏକ ଭାବମୟ ରାଜ୍ୟକୁ ନେଇଯାଏ । ମୋ କବିତା ପଢ଼ି କିଏ ପ୍ରଶଂସା କରେ, କିଏ ନିନ୍ଦାକରେ । ମତେ ଲାଗେ କାହାର ନିନ୍ଦା ବା ପ୍ରଶଂସା ନିର୍ଭୁଲ ନୁହେଁ, କେବଳ ତୋର ମତାମତଟି ମୋର ଏକ ପ୍ରକୃତ ମୂଲ୍ୟାୟନ । ତୋ ପରି ଗଭୀର ଶ୍ରଦ୍ଧା ଓ ଆନ୍ତରିକତା ନେଇ କେହି କରି ମୋ କବିତା ପଢ଼େ ? କବି କବିତା ଲେଖେ ଅନେକଟା ନିଜକୁ ଭାବମୁକ୍ତ କରିବାକୁ ; ଆବେଗମୁକ୍ତ ହେବାକୁ କିନ୍ତୁ ମୁଁ ବେଳେ ବେଳେ କବିତା ଲେଖେ ଭାବଯୁକ୍ତ ହେବାକୁ । ତୁ ଏକାଧାରରେ ହୋଇଛୁ ମୋର ପ୍ରେରଣା ଦାୟିନୀ, ସ୍ତାବକ ଓ ସମାଲୋଚକ । କିନ୍ତୁ ବୋଧହୁଏ ତୁ ଥିବା ସମୟରେ ମୁଁ ଯେତେ କବିତା ଲେଖିଛି ତାହା ମୋର ଭାବ ବିମୁକ୍ତି ନୁହେଁ ଭାବ ସଂଯୁକ୍ତି । ତାହା ମୋର ଭାବ ଯୋଗ । ଯୋଗରେ ଯେପରି ମନୁଷ୍ୟ ନିଜକୁ ଭଗବାନଙ୍କ ସହିତ ଯୋଗ କରିଦିଏ ଏଇ ଭାବ ଯୋଗରେ ସେପରି ବିହ୍ୱଳ ବିଭୋର ହୋଇ ଗୋଟିଏ ଭାବ ଭିତରେ ଲୀନ ହୋଇଯାଏ । ଆଜି କିନ୍ତୁ ତୋର ଅଭାବ ବଡ଼ ତୀବ୍ର ଭାବରେ ମନକୁ ଯନ୍ତ୍ରଣା ଦେଉଛି । ତେଣୁ ଏ ଚିଠିଟା ମୋର ଭାବ ବିମୁକ୍ତିର ମାଧ୍ୟମ ।

ମୁଁ ସକୃତଜ୍ଞ ଅନ୍ତରରେ ସ୍ୱୀକାର କରୁଛି, ତୋ ଠାରୁ ବହୁତ କିଛି ପାଇଛି; କିନ୍ତୁ ତାହା କଣ ମୁଁ ହୁଏତ ଜାଣେନା । ମୋର ଶୂନ୍ୟତାକୁ ତୁ ଅନେକଟା ପୂର୍ତ୍ତି କରି ରହିଥିଲୁ । ଜ୍ୱାଳାମୟ ରୌଦ୍ରରୁ ବୃକ୍ଷର ଶୀତଳ ଛାୟାକୁ ଆସିଲେ ଯେପରି ଶାନ୍ତି ଲାଗେ, ସମସ୍ୟା-ଗ୍ରସ୍ତ ମୋ ଜୀବନରେ ତୋ ସହିତ କଟିଥିବା ମୁହୂର୍ତ୍ତ ଗୁଡ଼ିକ ମତେ ସେପରି ଶାନ୍ତିମୟ ବୋଧ ହୋଇଛି । ମାତ୍ର ତୋତେ ମୁଁ ପ୍ରତିଦାନରେ କଣ ଦେଇପାରିଛି ? ମୋ ଅନ୍ତରର ଅନ୍ତଃସ୍ଥଳରୁ ଆଶୀର୍ବାଦ କରୁଛି, ତୁ ଜୀବନରେ ସୁଖୀ ହୁଅ ।

ତୋର ଅପା ଭଲଅଛି । ଇରା, ମିରା, କୁନୁ, ମୁନୁ ତୋତେ ଖୋଜୁଛନ୍ତି । ସେମାନଙ୍କ ସହିତ ଅଲକ୍ଷ୍ୟରେ ମିଶି ମୁ ବି ତୋତେ ଖୋଜୁଛି ।

ଏଠାରେ ଯେତେ ଦିନ ଥିଲୁ, ପରିବାରରେ ଏକ ହୋଇ ମିଶି ରହିଥିଲୁ । ସବୁ ସୁଖ ଦୁଃଖ, ଆନନ୍ଦ ବିଷାଦରେ ସମଭାଗୀ ହୋଇଥିଲୁ । ତୋର ନିଶ୍ଚୟ ଅନେକ ଅସୁବିଧା ହୋଇଥିବ । କେବେ ତ କୌଣସି ବ୍ୟାପାରରେ ଅପ୍ରସନ୍ନ

ହେବାର ଦେଖିନାହିଁ । ତଥାପି ଆମ ପକ୍ଷରେ ଯାହାସବୁ ତ୍ରୁଟି ରହିଯାଇଥିବ ତାହା କ୍ଷମା କରିଦେବୁ । ଚିଠି ଦେବୁ । ଇତି

ତୋର ଶୁଭାକାଂକ୍ଷୀ ରାଜଭାଇ ।

ରାଜେଶ୍ୱର ଚିଠିଟି ପଢ଼ା ଶେଷକରି ହାତମାଲା ଅଙ୍ଗୁଳି ଗମ୍ଭୀର ହୋଇଗଲା । ଏବଂ ଚିଠିଟିକୁ ଯତ୍ନରେ ଲଫାପାରେ ରଖିଦେଲା । ତାହାପରେ ସେ ଚିଠିଗୁଡ଼ିକର ଉତ୍ତର ଲେଖି ବସିଲା ।

ପ୍ରଥମେ ସେ ଲେଖିଲା ବୀରେଶ୍ୱରକୁ—

"ବନ୍ଧୁ ବୀରେଶ୍ୱର,

ତୁମ ଚିଠି ପାଇଲି । ତୁମର ପ୍ରତ୍ୟେକଟି କଥାର ମର୍ମ ହୃଦୟଙ୍ଗମ କଲି । ମୋ ପ୍ରତି ତୁମର ଆକର୍ଷଣ ଭିତରେ ଅସ୍ୱାଭାବିକତା କିଛି ନାହିଁ । ନିଜକୁ ଆଉ ଜଣେ ଭଲପାଏ—ଏ କଥା ଜାଣିଲେ ଯେ ଅପୂର୍ବ ଆନନ୍ଦ ମିଳେ, ମୁଁ ସେ ଆନନ୍ଦ ଅନୁଭବ କରୁଛି । ତୁମେ ଚିଠିରେ ଯେଉଁ ଭାବ ପ୍ରକାଶ କରିଛ ତାହା ମୁଁ ଆଗରୁ ମଧ୍ୟ ବୁଝିପାରିଥିଲି । ତୁମର ଅଗୋଚରରେ ମୁଁ ତୁମର ସବୁ କବିତା ଗଳ୍ପ ପଢ଼ି ଦେଇଛି । ଗୋଟିଏ ଗଳ୍ପରେ ତୁମେ ନାୟିକାକୁ ମୋ ନାମରେ ଭୂଷିତ କରେଇ ଦେଇଛ । ତୁମର ଏ ଭାବପ୍ରବଣତା ମତେ ଭଲ ଲାଗିନାହିଁ ବୋଲି କପଟ କହିବି । ତୁମକୁ ମୁଁ ବହୁତ ସ୍ନେହ କରେ । ତୁମେହିଁ ତ ଥିଲ ମୋର ପ୍ରଥମ ମୁହୂର୍ତ୍ତର ବନ୍ଧୁ । ତୁମ ସହିତ କେତେ ଆଲାପ ଆଲୋଚନା ତର୍କବିତର୍କ ହୁଏ । ଆଜି ସବୁ ମନେ ପଡ଼ୁଛି । ସବୁ ମଧ୍ୟ ଆଜୀବନ ମନେ ରହିବ ।

କିନ୍ତୁ ଭାଇ ବୀରେଶ୍ୱର । ପ୍ରେମକୁ ଭାବ ପ୍ରବଣତାରେ ମାପି ହୁଏନା । ଗୋଟିଏ ୧୯ ବର୍ଷର ଝିଅ ନିଜକୁ ଯେତିକି ବୁଝେ, ସେହି ବୟସର ଗୋଟିଏ ପୁଅ ନିଜକୁ ସେତିକି ବୁଝେନା । ମୋ ମତରେ ପ୍ରେମ ଅନ୍ୟକୁ ବୁଝିବା ନୁହେଁ । ତାହା ନିଜକୁ ବୁଝିବା । ତାହା ଆତ୍ମଜ୍ଞାନ । ସେ ଆତ୍ମଜ୍ଞାନ ଯେତିକି ନିର୍ଭୁଲ ହୁଏ, ପ୍ରେମ ହୁଏ ସେତିକି ନିର୍ଭେଜାଲ । ତେଣୁ ପ୍ରେମରେ ଖୋଜିବା, ପାଇବା ଓ ଦେବା ପ୍ରଭୃତି ଘଟିବା ପୂର୍ବରୁ ଏକ ଆତ୍ମମଗ୍ନ ତପସ୍ୟା କରିବାକୁ ହୁଏ । ତୁମେ ସେ ତପସ୍ୟା କର । ତୁମେ ନିଶ୍ଚୟ ଜୀବନରେ ଅବିମିଶ୍ର ପ୍ରେମ ପାଇବ । ରବୀନ୍ଦ୍ରନାଥଙ୍କର ଗୋଟିଏ କବିତାରେ ଠାଏଁ ଅଛି—

'ଯାହା ଚାଇ ତାହା ଭୁଲ୍ କରେ ଚାଇ
ଯାହା ପାଇ ତାହା ଚାଇନା'

ଜୀବନରେ ସମସ୍ତେ ଏଇ କଥାଟିକୁ ନିତ୍ୟନିୟତ ଅନୁଭବ କରୁଥାନ୍ତି କାରଣ ପ୍ରାୟ କେହି ଜାଣନ୍ତି ନାହିଁ, ସେ ନିଜେ କଣ ଚାହାନ୍ତି ଓ କଣ ପାଇଛନ୍ତି ।

ସେଥିପାଇଁ ସବୁ ବେଳେ ଏକ ନୀରବ ବ୍ୟର୍ଥତା ସମସ୍ତଙ୍କୁ ସ୍ପର୍ଶ କରେ, ପୀଡ଼ିତ-କରେ । ତୁମେ ମତେ ଚାହୁଁ ନା ମୋର ପ୍ରେମ କାମନା କର ? ଧର ମତେ ତୁମେ ବିବାହ କଲ । ତାହା ହେଲେ କଣ ତୁମେ ସ୍ଥିର ନିଶ୍ଚିତ ହୋଇପାରିବ ଯେ ତୁମେ ମୋର ପ୍ରେମ ପାଇଛ ?

ପ୍ରିୟବନ୍ଧୁ ବୀରେଶ୍ୱର, ତୁମେ ପ୍ରେମର ତପସ୍ୟା କର । ନିଶ୍ଚୟ ଅବମିଶ୍ର ପ୍ରେମ ପାଇବ । ପ୍ରେମିକାର ପ୍ରଲୋଭନ ତ୍ୟାଗକରି ପ୍ରେମର ପୂଜାକର ।

ତୁମପାଇଁ ମୋ ଭିତରେ ବହୁତ ସ୍ନେହ ଶ୍ରଦ୍ଧା ରହିଛି । ତୁମଙ୍କୁ ବନ୍ଧୁଭାବରେ ମୁଁ ସବୁବେଳେ ମନେ ରଖିବି । ମୋ କଥାରେ ଆହତ ହେବନାହିଁ । ଯାହା ଦେଇଛି ତାହା ମୋର ଅଯାଚିତ ଦାନ । ତାହାକୁ ତୁମେ ଗ୍ରହଣ କଲେ ମୁଁ ସୁଖୀହେବି ।

। ଇତି ।

ଖ୍ୟା ତ ମା ଳା

ଚିଠିଟି ଲେଖିସାରି ଖ୍ୟାତମାଳା ପୁଣିଥରେ ତାକୁ ଆମୂଳଚୂଳ ପଢିଲା । ପଢ଼ାଶେଷ କରି ଗୋଟିଏ ଲଫାପା ଭିତରେ ରଖିଲା । ତାପରେ ସେ ଲେଖିଲା ଦ୍ୱିତୀୟ ପତ୍ରର ଉତ୍ତର ।

"ଶ୍ରୀଲ ଶ୍ରୀଯୁକ୍ତ ବାବୁ ବ୍ରଜେଶ୍ୱର ମହାନ୍ତି,

ଇଂଜନିୟରେଷୁ, ମୋର ନମସ୍କାର ନେବ । ତୁମ ଚିଠିପାଇଁ ମୁଁ ଅପେକ୍ଷା କରିଥିଲି । ତୁମେ ମତେ କଣ କହିବାକୁ ଚାହୁଁଥିଲ, ଅଥଚ କହିପାରିଲ ନାହିଁ ତାହା ଜାଣିବାକୁ ମୋ ମନରେ କୌତୁହଳ ଭରି ରହିଥିଲା ।

ଚିଠିରୁ ସବୁକଥା ଜାଣିଲି । ତୁମର ନିଷ୍କପଟ ଆତ୍ମପ୍ରକାଶ ସତରେ ମତେ ବହୁତ ମୁଗ୍ଧ କଲା ।

ଚନ୍ଦ୍ର ତାରକା ମାନଙ୍କ ବିଷୟରେ ତୁମର ଯେଉଁ ବିପୁଳ ଆଗ୍ରହ, ମୋର ଧାରଣା ଥିଲା ତୁମେ ବୋଧହୁଏ ହେମାମାଳିନୀ ବା ଶର୍ମିଲା ଟାଗୋର ପାଇଁ ଜୀବନଦାନ କରିଦେବ । କିନ୍ତୁ ଶେଷରେ ତୁମେ ମୋତେ ଗ୍ରହଣ କରିବାକୁ ଆଗେଇ ଆସିବ ଏହା ସତରେ ମୋର କଳ୍ପନାତୀତ ଥିଲା ।

ତୁମ ଚିଠିର କି ଉତ୍ତର ଦେବି ! ତୁମପରି ସ୍ୱାମୀ ପାଇବାର ସୌଭାଗ୍ୟ କମ୍ ଝିଅଙ୍କୁ ମିଳେ । ତେଣୁ ତୁମର ପ୍ରସ୍ତାବ କଥା ଭାବି ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି । ମୋ ବିଷୟରେ ମୋ ନିଜର ଏମିତି କୌଣସି ବଡ଼ ଧାରଣା

ନାହିଁ । ମୁଁ ଆଉ ସମସ୍ତଙ୍କ ପରି ଗୋଟିଏ ସାଧାରଣ ଓ ସ୍ୱାଭାବିକ ଝିଅ । ତୁମଙ୍କୁ ବିବାହ କରି ମୁଁ ତୁମଙ୍କୁ ସୁଖଶାନ୍ତି ଦେଇପାରନ୍ତି କି ନାହିଁ କେଜାଣି ମୁଁ ନିଶ୍ଚୟ ସୁଖ-ଶାନ୍ତି ପାଇଥାନ୍ତି । ତୁମର ଚିଠି ଭିତରେ ତୁମର ଯେ ରୂପ ଦେଖିଲି ତାହା ସତରେ ଅପରୂପ । ମୋର ଧାରଣା ଥିଲା ତୁମେ ବଡ଼ ଅଗମ୍ଭୀର ଓ ଚଞ୍ଚଳ । କିନ୍ତୁ ତୁମର ଶାନ୍ତ ପ୍ରେମିକରୂପଟି ମତେ ପ୍ରକୃତରେ ବିସ୍ମିତ ଓ ଅଭିଭୂତ କରିଦେଲା ।

ବିଶ୍ୱାସ କର, ତୁମ ପ୍ରସ୍ତାବ ଗ୍ରହଣ କରିପାରିବି ନାହିଁ ଏକଥାଟାକୁ ଲେଖିବାକୁ ମତେ ଭାରି କଷ୍ଟ ଲାଗୁଛି । ତଥାପି ସତ କଥାଟାକୁ ପ୍ରକାଶ କରିବାକୁ ଦ୍ୱିଧା କରି ଲାଭ ନାହିଁ । ତୁମେ ମତେ ବିବାହ କରି ସୁଖୀ ହେବାକୁ ଚାହଁ । ତୁମଙ୍କୁ ସୁଖୀ କରିବାର ଦାୟିତ୍ୱ ନେଇ ମତେ ତୁମଙ୍କୁ ମୋର ସମସ୍ତ ସତ୍ତାକୁ ସମ୍ପୂର୍ଣ୍ଣ ଭାବରେ ଉତ୍ସର୍ଗ କରିବାହିଁ ଉଚିତ୍ । ତୁମର ସ୍ତ୍ରୀ ହୋଇ ତୁମ ପାଖରେ ମୁଁ ଅକପଟ ଭାବରେ ଆତ୍ମ ସମର୍ପଣ ନ କଲେ ସେ ସମ୍ପର୍କ ପ୍ରେମର ଛଳନାରେ ପରିଣତ ହୋଇଯିବ । କିନ୍ତୁ ତାହା କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ତୁମପରି ଜଣେ ଶାନ୍ତ ସୁଧୀର ପ୍ରେମିକ କୁ ସ୍ୱାମୀ ଭାବରେ ଗ୍ରହଣ କରି ତୁମ ପାଖରେ ଛଳନା ଆଚରଣ କରିବାଟାକୁ ମୁଁ ବଡ଼ କୁତ୍ସିତ ବୋଲି ମନେ କରୁଛି ।

ତୁମେ ହୁଏତ ମୋ କଥାରୁ ଧାରଣା କରୁଥିବ, ମୋର ଏକ କଳଙ୍କମୟ ଅତୀତ ଅଛି । ଏକ କଥାରେ ତା'ର ଉତ୍ତର ନା । ସାଧାରଣ ବିଚାରରେ ମୋର ଚରିତ୍ର କଳଙ୍କମୁକ୍ତ । କୌଣସି ପୁରୁଷ ମୋର ଦେହ ସ୍ପର୍ଶ କରିନାହିଁ । କିନ୍ତୁ ମୋର ହୃଦୟକୁ ସ୍ପର୍ଶ କରିଛି ଏକ ପୁରୁଷ ଯାହାର ଆଗୋଚରରେ ମୁଁ ତାର ପ୍ରେମିକା । ସେ ପୁରୁଷ ହାତ ବଢ଼ାଇ ମତେ ଧରିନାହିଁ । କିନ୍ତୁ ମୁଁ ତାର ଉଦ୍ଦେଶ୍ୟରେ ନିଜକୁ ଉତ୍ସର୍ଗ କରିଦେଇଛି । ଏହା ମୋର ପ୍ରଚଣ୍ଡ ଭାବପ୍ରବଣତା ବୋଲି ମୋର ବେଳେ ବେଳେ ଆଶଙ୍କା ହୁଏ । କିନ୍ତୁ ସେ ଭାବପ୍ରବଣତା ଭିତରୁ ନିଜକୁ ମୁକ୍ତ କରିବାର ଉପାୟ ମୁଁ ଜାଣେନା । ମୋର ପ୍ରେମ ନୀରବ ଏବଂ ତାର ପ୍ରତିଦାନରେ ମୁଁ କିଛି କାମନା ପୋଷଣ କରି ନାହିଁ ।

ମୁଁ ଜାଣେ, ମୋର ପ୍ରତ୍ୟାଖ୍ୟାନ ତୁମଙ୍କୁ କଷ୍ଟ ଦେବ । କିନ୍ତୁ ବିଶ୍ୱାସ କର, ତୁମେ ମୋର ଉପଯୁକ୍ତ ନୁହେଁ ବୋଲି ନୁହଁ, ମୋର ଅନ୍ତରର ସ୍ଖଳନ ପାଇଁ ମୁଁ ତୁମର ଉପଯୁକ୍ତ ନୁହେଁ ବୋଲି ମତେ ଖୁବ୍ ଦୃଢ଼ ହେବାକୁ ହେଲା । ତୁମର ପ୍ରସ୍ତାବ ମୋ ପାଇଁ ଅତୀବ ଲୋଭନୀୟ । କିନ୍ତୁ ମୁଁ ପ୍ରଲୋଭନରେ ପଡ଼ି ତୁମଙ୍କୁ ପ୍ରତାରଣା କରି ପାରିବି ନାହିଁ, ମତେ କ୍ଷମାକର ।

ମୁଁ ଏକ ଅସାଧାରଣ ବା ଅପୂର୍ବ ନାରୀ ନୁହେଁ । ମୋତେ ବିବାହ କଲେ, ବା ନ କରି ପାରିଲେ ତୁମର ଲାଭ ବା କ୍ଷତି କିଛି ହେବନାହିଁ । ତୁମଙ୍କୁ ଯେଉଁ ଝିଅ ବିବାହ କରିବ ସେ ନିଶ୍ଚୟ ସୁଖୀ ହେବ । ତୁମେ ଆଉ ଗୋଟିଏ ମନୋମତ କନ୍ୟା ବରଣ କରି ସୁଖୀ ହୁଅ ।

ଗୋଟିଏ କଥା ମନେରଖିବ ସୀତମାଲା ତୁମଙ୍କୁ ଆନ୍ତରିକତାର ସହିତ ଗଭୀର ଶ୍ରଦ୍ଧା ଓ ସମ୍ମାନ କରେ ।

। ଇତି ।

ସୀ ତ ମା ଳା ।"

ତାପରେ ସୀତମାଳା ଲେଖିବସିଲା ତାର ଶେଷ ପତ୍ରର ଉତ୍ତର ।

ପୂଜନୀୟେଷୁ,

ମୋର ଭକ୍ତି ଓ ଶ୍ରଦ୍ଧାପୂର୍ଣ୍ଣ ପ୍ରଣାମ ଗ୍ରହଣ କରିବ ।

ତୁମ ପାଖକୁ ସାଙ୍ଗେ ସାଙ୍ଗେ ମୋର ଚିଠି ଦେବାକଥା । କିନ୍ତୁ ଚିଠି ଦେଇ ପାରିନଥିଲି ଏକ ଦୁର୍ଭାବନାରେ ପଡ଼ି ।

ତୁମେ ଥରେ କହୁଥିଲ, 'ସତ କହିବା କଠିନ, କାରଣ ସତଟା କଣ ଆମେ ଠିକ୍ ଭାବରେ ଜାଣୁନା । ବହୁ ସମୟରେ ରାବଣ ସାଧୁବେଶ ଧରି ସୀତାଙ୍କୁ ଭୁଲେଇବା ପରି ମିଥ୍ୟା ସତ୍ୟ ରୂପରେ ଆସି ଆମକୁ ପ୍ରତାରିତ କରେ ।' ଏଇ ସତ୍ୟ ଅସତ୍ୟର ଦ୍ୱନ୍ଦ୍ୱରେ ପଡ଼ି ମୁଁ ଚିଠି ଦେଇ ପାରି ନଥିଲି । ଅବଶ୍ୟ ଭଲରେ ପହଞ୍ଚିଲି, ବାପା ଭଲ ଅଛନ୍ତି, ଅପାକୁ ନମସ୍କାର ଜଣାଇବ, ପିଲମାନେ ମତେ ଖୋଜୁଛନ୍ତି କି ? ଇତ୍ୟାଦି ଲେଖି ଖଣ୍ଡିଏ ଗତାନୁଗତିକ ଚିଠି ଲେଖିବାକୁ କୌଣସି ବାଧା ନଥିଲା । କିନ୍ତୁ ମୁଁ ତୁମପାଖକୁ ତା ଠାରୁ ଆଉ କିଛି ଅଧିକ କଥା ଲେଖିବାକୁ ଚାହୁଁଥିଲି ବୋଲି ଚିଠି ଦେଇ ନଥିଲି ।

ଯାହାହେଉ, ତୁମର ଚିଠିଟି ପାଇ ମୋର ସଙ୍କୋଚ ଓ ଦ୍ୱିଧା ବହୁତ କଟିଯାଇଛି । ସତ୍ୟ ଅସତ୍ୟର ଦ୍ୱନ୍ଦ୍ୱ ସମାଧାନ କରି ପାରିଛି ବୋଲି ମୋର ବିଶ୍ୱାସ ହେଉଛି ।

୯ ବର୍ଷ ତଳେ ତୁମଙ୍କୁ ପ୍ରଥମେ ଦେଖିଥିଲି କୋଉଁ ବେଶରେ ତୁମେ ଆମ ଘରକୁ ଆସିଥିଲ । ସେତେବେଳେ ମୋର ବୟସ ୯ । ୧୦ ବର୍ଷ । ମୁଁ ଷଷ୍ଠ

ଶ୍ରେଣୀରେ ପଢ଼ୁଥାଏ । ଫ୍ରକ୍ ପିନ୍ଧୁଥାଏ । ମୁଁ ଯେତେବେଳେ ତୁମ ପାଖକୁ ଆସିଲି, ତୁମେ ମୋ ହାତକୁ ଧରି ପକାଇ କହିଲ, "ତୁମେ ଯୌତୁକ ହୋଇ ଆସୁଛ ନା ।"

ମୁଁ କହିଲି 'ଅଭଦ୍ର' ।

ତୁମପ୍ରତି ପ୍ରଥମରୁ ମୋର ପ୍ରଗାଢ ଶ୍ରଦ୍ଧା ଥିଲା । ତୁମେ ଅଧ୍ୟାପକ । କଲେଜରେ ପାଠ ପଢ଼ାଅ । ବାପା ବି ଅଧ୍ୟାପକ । ତାଙ୍କୁ ଆମେ ଭୟକରୁ, ଭକ୍ତିକରୁ । ତୁମପ୍ରତି ସେହିପରି ଭକ୍ତି ଓ ଶ୍ରଦ୍ଧା ଉଦ୍ରେକ ହୋଇଥିଲା ମନରେ । ତା ବ୍ୟତୀତ ମୁଁ ଜାଣିଥିଲି ତୁମେ କବି, ବହୁତ ବହି ଲେଖିଛ । ତୁମର ଗୋଟିଏ କବିତା ଆମ ସାହିତ୍ୟ ବହିରେ ଥିଲା । ସେ କବିତାଟି ମତେ ଖୁବ ଭଲ ଲାଗେ । ତେଣୁ ତାର ରଚୟିତାଙ୍କୁ ଭେଟିବାର ଅବସର ପାଇ ମୋ ମନରେ ଗର୍ବ ଆସୁଥିଲା ଏବଂ ରଚୟିତା ପ୍ରତି ମଧ୍ୟ ଅନୁରାଗ ଆସିଥିଲା ।

ତା ପରେ ତୁମେ ଯେତେବେଳେ ଆମ ଘରକୁ ଆସିଲ—ଥଟ୍ଟା ପରିହାସ କର ବୋଲି ମୁଁ ତୁମ ପାଖକୁ ଯାଏ ନାହିଁ । କିନ୍ତୁ ପରିହାସର ଉତ୍ତର ଦିଏ । ଦିନେ କହିଲି 'ତୁମେ ପରା କବି, ମୋ ପାଇଁ ଗୋଟିଏ କବିତା ଲେଖିଦେଲ । ମୁଁ ଆମ ସ୍କୁଲ ମାଗାଜିନ୍‌ରେ ଦେବି ।'

ତୁମେ ଆଶ୍ୱାସନା ଦେଲ, 'ଲେଖିଦେବି ।' ମୁଁ କହିଲି, 'ବାବାରେ କବି-ମାନେ ସାଙ୍ଗେ ସାଙ୍ଗେ ଲେଖି ଦେଉନା !"

ତୁମେ ସାଙ୍ଗେ ସାଙ୍ଗେ କାଗଜ କଲମ ନେଇ କବିତା ଲେଖି ବସିଲ । ଦଶ ପନ୍ଦର ମିନଟ୍ ଭିତରେ ଯେଉଁ କବିତାଟି ଲେଖି ମୋ ହାତକୁ ଦେଲ ତାର ପ୍ରତ୍ୟେକଟି ଶବ୍ଦ ଜନ୍ମ୍‌ଲ ଭାବରେ ମୁଁ ଆଜି ପର୍ଯ୍ୟନ୍ତ ମନେ ରଖିଛୁ । ତୁମର ମନେ ଅଛି ? କବିତାଟି ଥିଲା ଏହିପରି,

ଆଗୋ ସୁନ୍ଦରୀ ମୋର ଶାଳିକା,
ଚଞ୍ଚଳ ଚପଳ କିଶୋରୀ ବାଳିକା ।

ତୁମ ସିନ୍ଦୁରରେ ଝରଇ ସୁଷମା,
ଝରେ ଅମୃତ ତୁମ ବଚନେ,

ଝରେ କଲ୍ୟାଣ ତୁମ ପରଶେ,
ଝରେ ଜ୍ୟୋତି ରାଶି ତୁମ ନୟନେ ।

ପ୍ରୀତି ଝରଣା ଝରଇ ହୃଦୟେ
ତୁମେ ଚିର ନବ ଅଭିସାରିକା ।

ଆଗୋ ସୁନ୍ଦରୀ ମୋର ଶାଳିକା,
ଝୁରୁ ଚପଳ କିଶୋରୀ ବାଳିକା,

ଘନ ଗହନ ତାମସୀ ନିଶୀଥେ
ତୁମେ ଧ୍ରୁପଦୀ ପରି ଜଳିବ

ଏଇ ଜୀବନ-ଅଗ୍ନି ଦାହରେ
ପୁଣି ସ୍ୱର୍ଣ୍ଣ ପରିଏ ଝଳିବ ।

ଦେବ ଅଜାଡ଼ି ସୁରଭି ଫୁଟିଲେ
ଶ୍ୱେତ ଶୁଭ୍ର ମାନସ-କଳିକା ।

ଆଗୋ ସୁନ୍ଦରୀ ମୋର ଶାଳିକା,
ଝୁରୁ ଚପଳ କିଶୋରୀ ବାଳିକା ।

ମୁଁ ଭାବୁଥିଲି ଗୋଟିଏ କବିତା ଯେଉଁଟି ଆମ ସ୍କୁଲ ମାଗାଜିନ୍‌ରେ ମୋ ନାମରେ ଛପାହେବ । କିନ୍ତୁ ତୁମେ ଲେଖିଦେଲ କବିତା ମୋ ନାଁରେ । ସପ୍ତମ ଶ୍ରେଣୀରେ ପଢ଼ୁଥିଲେ ମଧ୍ୟ ମୋର ସାହିତ୍ୟ ଜ୍ଞାନ ଭଲଥିଲା । ତେଣୁ ତୁମ କବିତାଟିକୁ ମୁଁ ପ୍ରାୟ ବୁଝି ପାରିଥିଲି । ସେହି ଗୋଟିଏ କବିତାରେ ହିଁ ମୁଁ ତୁମ ପାଖରେ ବନ୍ଧାହୋଇ ରହିଗଲି । ମୁଁ ନିଜେ ବି କେବେ କେବେ କବିତା ଲେଖୁଥିଲି । ସେ କଥା ତୁମକୁ ଅପା କହି ଦେଇଥିଲା । ମୁଁ ତାହା ଜାଣିପାରିନଥାନ୍ତି, ଯଦି ଗୋଟିଏ କବିତା ତଳେ ତୁମେ ଲେଖି ନଥାନ୍ତି, 'ଖୁବ୍ ଭଲ ହୋଇଛି' । ତୁମେ ମୋ କବିତା ପଢ଼ି ଦେଇଛ ବୋଲି ମୁଁ ସେଦିନ କାନ୍ଦିଲି, ରୁଷିଲି । କିନ୍ତୁ ତୁମ ଉପରେ ରାଗିପାରିଲି ନାହିଁ । ତୁମ ଉପରେ ଶ୍ରଦ୍ଧାହେଲା । ତୁମର ସେଇ କଥା ପଦକ ପାଇଁ 'ଖୁବ୍ ଭଲ ହୋଇଛି ।'

ତା ପରେ ତୁମ କବିତା ବହି, ପତ୍ରପତ୍ରିକାରେ ପ୍ରକାଶିତ କବିତା ସବୁ ମୁଁ ନିବିଡ଼ ଆଗ୍ରହରେ ପଢ଼ିଛି ଏବଂ ମୋର ଅଗୋଚରରେ ମୋ ଭିତରେ ତୁମ ପାଇଁ ଗଭୀର ପ୍ରୀତି ଗଢ଼ି ଉଠିଛି । ଯୌବନରେ ପଦାର୍ପଣ କରିବା ପୂର୍ବରୁ ତୁମେ ମୋ ମନଭିତରେ ପ୍ରତିଷ୍ଠିତ ହୋଇ ସାରିଥିଲ, ମୋ ଅନ୍ତରପ୍ରିୟ ପୁରୁଷ ଭାବରେ । ମୁଁ ସତରେ ତୁମକୁ ବହୁତ ଭଲପାଇଛି । ଶ୍ରଦ୍ଧା ଓ ସମ୍ମାନ କରିଛି । ତୁମେ ଚିଠି ଲେଖ । ସେ ଚିଠିକୁ ମୁଁ ଅମୃତ ପରି ପାନ କରି ପକାଏ । ତାର ପ୍ରତ୍ୟେକଟି ଶବ୍ଦ ମୋ ସ୍ମୃତିରେ ଖୋଦିତ ହୋଇଯାଏ ।

କୈଶୋର ପାର ହୋଇ ମୁଁ ଯୌବନରେ ପ୍ରବେଶ କଲି । ମୋ ମନରେ ନୂତନ ରାଗ ରଙ୍ଗର ଜାଗରଣ ହେଲା । କିନ୍ତୁ ତୁମେହିଁ ପୂଜା ମଣ୍ଡପରେ ରହିଗଲ ଆରାଧ୍ୟ ଦେବତା ହୋଇ ।

ପୁରୀରେ ଯାଇ ଦୁଇବର୍ଷ ରହିନଥିଲେ କଣ ହୋଇଥାନ୍ତା କେଜାଣି । କିନ୍ତୁ ଏଇ ଦୁଇବର୍ଷ ଭିତରେ ମୁଁ ତୁମଙ୍କୁ ଆହୁରି ବେଶୀ ଭଲ ପାଇ ବସିଲି । ତୁମର କର୍ମକ୍ଳାନ୍ତ ମୁହଁଟି ଦେଖି ମନେହୁଏ ତୁମଙ୍କୁ ଛାତିରେ ଧରି ଆଉଁସି ଦିଅନ୍ତି । ତୁମର ଯତ୍ନ ନେବାକୁ ମନଭିତରେ ପ୍ରବଳ ଇଚ୍ଛା ହୁଏ । କିନ୍ତୁ ମୋର ଅଧିକାର ବାହାରେ ଯାଇ କେବେ କିଛି କରିବାକୁ ମୁଁ ନିଜକୁ ନିବୃତ୍ତ କରେ ।

ମୁଁ ପ୍ରତିଘର ପୂଜାରିଣୀରୁ ମନେ ମନେ ତୁମର ପ୍ରେମିକା ହୋଇଯାଇଥିଲି । ତୁମେ ଯଦି ସପ୍ରେମରେ ହାତ ବଢ଼ାଇଥାନ୍ତ ମୁଁ ହୁଏତ ନିଜକୁ ସମର୍ପଣ କରିଦେଇ ସୁଖୀ ହୋଇଥାନ୍ତି ।

ତୁମେ ସ୍ଥିର ସଂଯତ ପୁରୁଷ । କୌଣସି ଦିନ ତୁମ ବ୍ୟବହାରରେ ମୁଁ ଚପଳତା ଦେଖିନାହିଁ । ମୁଁ ବି ନିଜର ମନକୁ ଆତ୍ମାଧୀନ ରଖିଛି । ମୋ ପ୍ରେମକୁ କାମନାରେ କଳଙ୍କିତ କରିବାକୁ ଚାହିଁନାହିଁ । ଦେହର ଦାହରେ ଦଗ୍‌ଧ କରି ମୁଁ କଣ ପ୍ରେମ ପାଇଥାନ୍ତି ।

ତୁମେ ଯେତେବେଳେ ଯାହା କହ ସବୁ ମତେ ନୂଆ କଥାପରି ଲାଗେ । ସବୁ ମନେହୁଏ ନିର୍ଭୁଲ, ସ୍ୱତଃ ପ୍ରମାଣିତ ସତ୍ୟ । ମନେ ଅଛି, ତୁମେ ଥରେ କହିଥିଲ, ମନୁଷ୍ୟ ପଶୁଠାରୁ ଭିନ୍ନ । କାରଣ ତା ଅନ୍ତରରେ ସ୍ୱର୍ଗୀୟ ଅମୃତରୁ ଏକ କଣା ରହିଛି । ସେହି ଅମୃତ ବିନ୍ଦୁକୁ ଆବୃତ କରି ରହିଛି ମଣିଷର ପ୍ରବୃତ୍ତି, ପ୍ରବୃତ୍ତି ଓ ଅହଙ୍କାର । ତେଣୁ ସମସ୍ତେ ନିଜର ଗଭୀରତମ ଗୋପନତମ ଅନ୍ତଃ ସ୍ଥଳକୁ ଯାଇ ସେଇ ଅମୃତ ବିନ୍ଦୁର ସନ୍ଧାନ କରିପାରନ୍ତି ନାହିଁ । ସେହି ଅମୃତ ବିନ୍ଦୁଟି ହେଲା ପ୍ରେମ । ନିଜର ଅମୃତମୟ ସତ୍ତାକୁ ଆବିଷ୍କାର ନ କଲେ ସେ ଅମୃତ ବିନ୍ଦୁକୁ ଧରି ହୁଏ ନାହିଁ । ତେଣୁ ଯେ ପ୍ରକୃତରେ ପ୍ରେମ କରିପାରେ ସେ ପୁଣ୍ୟବାନ୍ ଏବଂ ଯେ ସେ ପ୍ରେମ ପାଏ ସେ ଭାଗ୍ୟବାନ୍ ।

ମୁଁ ଶପଥ କରିଛି ମୋର ଅନ୍ତରର ସେଇ ଅମୃତ ବିନ୍ଦୁକୁ ଆବିଷ୍କାର କରି ତୁମ ପାଖରେ ନିବେଦନ କରିବାକୁ ଆଜୀବନ ସାଧନା କରିବି ।

ଲୋକେ କହନ୍ତି, ପ୍ରେମ ଅନ୍ଧ । ତୁମ ମତରେ ପ୍ରେମ ହେଉଛି ଦିବ୍ୟ-ଜ୍ଞାନ । ତାହା ଅନ୍ଧତା ନୁହେଁ । ଅନ୍ଧ ହେଉଛି ପ୍ରବୃତ୍ତି ଯାହାକୁ ଆମେ ପ୍ରେମର

ଆଖ୍ୟାଦେଇ ଭୁଲକରୁ । ଅସତ୍ୟ ଭିତରେ ସତ୍ୟକୁ ଖୋଜି ନିରାଶହେଉ । ପ୍ରେମ ବିଷୟରେ ଭ୍ରାନ୍ତଧାରଣା ପୋଷଣ କରୁ । ପ୍ରବୃତ୍ତିସ୍ର ବୃତ୍ତିବେଳେ ସବୁ କ୍ଷେତ୍ରରେ ସମାନ । ସେଥିରେ ଭଲମନ୍ଦ ନାହିଁ, ବଡ଼ ସାନ ନାହିଁ । ପ୍ରେମରେ ପ୍ରବୃତ୍ତି ଥାଇପାରେ, କିନ୍ତୁ ପ୍ରବୃତ୍ତିରେ ପ୍ରେମ ନାହିଁ । ନାରୀ ପଶୁ ତାର ଦେହ ଦାନ କରି ପୁରୁଷକୁ ଯେଉଁ ଆନନ୍ଦ ଦିଏ ନାରୀ ତାର ଦେହ ଦେଇ ପୁରୁଷକୁ ତା ଠାରୁ ଅଧିକ କଣ ଦିଏ ? ଉଭୟ କ୍ଷେତ୍ରରେ Quality of Pleasure ସମାନ ।

ତୁମ କଥା ସବୁ ଅକ୍ଷରେ ଅକ୍ଷରେ ସତ୍ୟ । ସେଇ ପ୍ରବୃତ୍ତିର ଉଚ୍ଚ ପ୍ରାଚୀର ଡେଇଁ ମତେ ଯିବାକୁ ହେବ ଆହୁରି ନିଜର ଗଭୀର ସତ୍ତାକୁ ଯେଉଁ ଅମୃତ ବିନ୍ଦୁର ସନ୍ଧାନରେ ।

ମୁଁ ତୁମ ପାଖରେ ଥାଇ ଆନନ୍ଦିତ ହେବି ନାହିଁକି ଦୂରରେ ଥାଇ ଦୁଃଖିତ ହେବି ନାହିଁ । କାରଣ ତୁମେ ବାହାରେ ନାହିଁ । ତୁମେ ଅଛ ମୋ ଭିତରେ, ମୋର ଅନ୍ତର ଭିତରେ ।

ତୁମଙ୍କୁ ମୋର ଦେବାର କିଛି ନାହିଁ । ହୃଦୟର ସେଇ ଅମୃତ ବିନ୍ଦୁକୁ ଯେତେଦିନ ନ ଦେଇଛି ଆଉ କଣ ଦେବା କଥା ଭାବିବି !

ତୁମ ଠାରୁ ମୋର କିଛି ପାଇବାର ବି ନାହିଁ । ଦେବାରେ ଯେଉଁ ଆନନ୍ଦ ତାହା ପାଇବାରେ ନଥାଏ ।

ହୃଦୟର ଅମୃତ ବିନ୍ଦୁ ନେଇ ଯେଉଁଦିନ ମୁଁ ତୁମର ଶୂନ୍ୟତାକୁ ପୂର୍ଣ୍ଣ କରିଦେଇ ପାରିବି, ସେହିଦିନ ମୁଁ ମୋର ପାଇବାର କାମନାକୁ ତୁମ ପାଖରେ ବାଢ଼ିବି । କିନ୍ତୁ ସେ ସୁଦିନ କେଉଁ ଜନ୍ମରେ ଆସିବ ତାହା ଭଗବାନ ହିଁ ଜାଣନ୍ତି । କିନ୍ତୁ ପଥ ଯେତେ ଦୁର୍ଗମ ହେଉ, ଯେତେ ସୁଦୂର ହେଉ, ସବୁ ଅତିକ୍ରମ କରିବା ପାଇଁ ମୋର ନିଷ୍ଠା ଓ ବିଶ୍ୱାସ ଅଛି । । ଇତି ।

ତୁମର ଶାନ୍ତି

୧ । ୯ । ୬୮

ବାଲେଶ୍ୱର



# ପିକ୍‌ଲୁ

ଜିଲ୍ଲାପାଳ ଭାବରେ ଯେଉଁ ଦିନ ଦାୟିତ୍ୱ ନେବାକୁ ପହଞ୍ଚିଲି, ସେହିଦିନ ହିଁ ତାକୁ ଦେଖିଲି । ଖାଲି ଏମିତି ଦେଖିଥିଲେ ହୁଏତ ଚିହ୍ନି ପାରି ନଥାନ୍ତି । କିନ୍ତୁ ତାର ନାଁଟା ଶୁଣିବା ମାତ୍ରେ ମନରେ ସନ୍ଦେହ ଆସିଲା । ନାଁଟା ତାର ସାଧାରଣ ନାଁ ଠାରୁ ଟିକିଏ ଅଲଗା । ଏପରି ନାଁ କେବଳ ମୋ ଜାଣିବା ଭିତରେ ତାର ହିଁ ଥିଲା । ପୁଣି ତା ସହିତ ସରନେମ୍ ବି ମିଳିଗଲା । ନିଃସନ୍ଦିଗ୍ଧ ହେବାପାଇଁ ମୋର ପଦମର୍ଯ୍ୟାଦା ଦୃଷ୍ଟିରୁ ଉଚିତ ଦୂରତ୍ୱ ଓ ସଂଯମ ରକ୍ଷାକରି କଥା ପ୍ରସଙ୍ଗରେ ତା' ଠାରୁ ତାର ପରିଚୟ ସଂଗ୍ରହ କରିନେଲି ।

ତାର ନାମ ସୁପରିମଳ ମହାପାତ୍ର । ତାର ବାପାଙ୍କ ନାମ ସୁବ୍ରତ ମହାପାତ୍ର । ଗୋଟିଏ ବଡ଼ ବ୍ୟାଙ୍କ୍‌ରେ ଉଚ୍ଚ ପଦସ୍ଥ ଅଫିସର ଥିଲେ । ତାଙ୍କ ଘର ବାଲେଶ୍ୱର ଜିଲ୍ଲାରେ ।

ଆପେ ଆପେ ମୋର ମନେପଡ଼ିଗଲା ସୁପରିମଳର ଡ଼ାକ ନାମ ଥିଲା ପିକ୍‌ଲୁ । ସେଇ ନାମରେ ହିଁ ସେ ବେଶୀ ପରିଚିତ ଥିଲା ।

ଜିଲ୍ଲାପାଳ ଭାବରେ ଏଇ ପ୍ରଥମ ଦାୟିତ୍ୱ ନେଲି ଆଜି । କିନ୍ତୁ ଏଇ ଖୁସି ଦିନରେ ପିକ୍‌ଲୁକୁ ଏହିପରି ଅପ୍ରତ୍ୟାଶିତ ଭାବରେ ଦେଖିବା ପରେ ମନଟା ଦୂର ଅତୀତର ବିବର୍ଣ୍ଣ ସ୍ମୃତିରେ ବିଷର୍ଣ୍ଣ ହୋଇ ପଡ଼ିଲା ।

ପିକ୍‌ଲୁ ମୋ ଅଫିସରେ ଗ୍ରେଡ୍‌ଓ୍ୱାନ୍ ଆସିଷ୍ଟାଣ୍ଟ । ତାର ଶୀର୍ଣ୍ଣ ଦେହ ସାଧାରଣ ବେଶ ପୋଷାକ ଓ ମ୍ଳାନ ମଳିନ ମୁହଁ ପାଖରେ ମୋର ତେଜୋଦୀପ୍ତ ଉପସ୍ଥିତି ମତେ ଯେପରି ସଙ୍କୁଚିତ କରି ପକାଇଲା ।

ଆଜି ଅତୀତ ଯେପରି ବର୍ତ୍ତମାନ ଅପେକ୍ଷା ଅଧିକ ଜରୁରୀ ହୋଇ ମୋ ପାଖରେ ନିଜକୁ ଜାହିର କରୁଛି । ଅତୀତକୁ ସ୍ମରଣ ନ କରି ଆଜି ମୋର ଉପାୟ ନାହିଁ । ଆଜି ପ୍ରଥମେ ଅତୀତର ସେଇ ଭୟଙ୍କର ଦିନଟାର କଥାହିଁ ମନକୁ ଆସୁଛି ।

ଦୀର୍ଘ ୧୭ ବର୍ଷ ତଳର ଏକ ମ୍ଳାନ ଅପରାହ୍ଣର ସେଇ ଅତୀବ ବେଦନା ଦାୟକ ଘଟଣାଟାକୁ ମନେପକାଇବା ବେଳେ ମୋର ଅନ୍ତର ଭିତରଟା ଆଜି ବି ବିକ୍ଷୋଭିତ ହୋଇଉଠୁଛି ।

ଆମେମାନେ ସବୁ ଖେଳୁଥିଲୁ । ପିକ୍‌ଲୁର ବାପାଙ୍କର କ୍ୱାଟରସ୍ ଆଗରେ ଗୋଟିଏ ବିସ୍ତୀର୍ଣ୍ଣ ପଡ଼ିଆ ଥିଲା । ସେଇଠି ଆମେମାନେ ଫୁଟବଲ୍ ଖେଳୁଥିଲୁ । ମୁଁ ପିକ୍‌ଲୁ ଓ ଆମର ଅନେକ ସମବୟସୀ ସହପାଠୀ ବନ୍ଧୁ । ଖେଳ ଖୁବ୍ ଜମି ଉଠିଥିଲା । ବାଜିଥିଲା ଯେଉଁ ଦଳ ହାରିବ ସେ ଅନ୍ୟଦଳକୁ କୋଲ୍‌ଡ୍ରିଙ୍କ୍ ପିଇବାକୁ ଦେବ । ମୁଁ ଥିଲି ପିକ୍‌ଲୁର ବିରୋଧୀ ଦଳରେ । ଆମ ଦଳରୁ ମୁଁ ପ୍ରଥମେ ଗୋଟିଏ ଗୋଲ୍ ଦେଇଥିଲି । କିଛି ସମୟ ପରେ ପିକ୍‌ଲୁର ଦଳ ସେଇ ଗୋଲ୍‌ଟାକୁ ଶୁଝାଇ ଦେଲେ । ଏହିପରି ଉତ୍ତେଜନା ପୂର୍ଣ୍ଣ ସମୟରେ ପିକ୍‌ଲୁ ଘରୁ ତାଙ୍କ ଚାକର ପିଲା ଆସି ଡାକପକାଇଲା, 'ପିକ୍‌ଲୁବାବୁ, ପିକ୍‌ଲୁବାବୁ ଜଲଦି ଆସ । ମା ଡାକୁଛନ୍ତି ।'

ପିକ୍‌ଲୁ ଅନିଚ୍ଛାସତ୍ତ୍ୱେ ଚାଲିଗଲା, ଖେଳ କିଛି ସମୟ ପାଇଁ ସ୍ଥଗିତ ରଖିବାକୁ କହି । ଆମେମାନେ ଦେଖିଲୁ ପିକ୍‌ଲୁର ଘର ଆଗରେ ଗୋଟାଏ ଜିପ୍ ଆସି ରହିଥିଲା । ସେଇଠି ଜଣେ ପୋଲିସ୍ ଅଫିସର୍ ଠିଆ ହୋଇଥିଲେ । ସ୍ୱାଭାବିକ କୌତୁହଳ ନେଇ ଆମେ ସମସ୍ତେ ପିକ୍‌ଲୁ ଘରକୁ ଦୌଡ଼ି ଆସିଲୁ । ସେତେବେଳେ ପିକ୍‌ଲୁ ଓ ତାର ଦୁଇ ଭାଇଭଉଣୀଙ୍କୁ ନେଇ ପିକ୍‌ଲୁର ମା ଜିପ୍‌ରେ ବସିବାକୁ ଯାଉଥିଲେ । ତାଙ୍କର ମୁହଁ ଦେଖି ମୁଁ ବୁଝିପାରିଲି ଗୋଟିଏ କିଛି ବିପଦ ଘଟି ଯାଇଛି । ପିକ୍‌ଲୁ ମତେ ଦେଖିପାରି କହିଲା, 'ଡାକ୍ତରଖାନାକୁ ଯାଉଛି । ବାପାଙ୍କର ଗାଡ଼ି ଆକ୍‌ସିଡେଣ୍ଟ୍ ହୋଇଛି ।'

ଜିପ୍ ଚାଲିଗଲା; ଆମର ଖେଳ ବି ବନ୍ଦ ହୋଇଗଲା । ଆମେ ସମସ୍ତେ ଡାକ୍ତରଖାନାକୁ ଦୌଡ଼ିଲୁ । ଡାକ୍ତରଖାନା ସେଠାରୁ ମାଇଲେ ଦୂର ।

ଡାକ୍ତରଖାନାରେ ପହଁଚିବା ମାତ୍ରେ ସେଇ ମର୍ମନ୍ତୁଦ ଖବର ମିଳିଲା । ପିକ୍‌ଲୁର ବାପା ଆଉ ନାହାନ୍ତି । କାର୍ ଦୁର୍ଘଟଣାରେ ତାଙ୍କର ଘଟଣା ସ୍ଥଳରେ ମୃତ୍ୟୁ ହୋଇ ଯାଇଥିଲା । ଡାକ୍ତରଖାନାରେ ବହୁତ ଲୋକ ଜମା ହୋଇଥିଲେ । ତା ଭିତରେ ପାଗଳୀ ପରି ମୁଣ୍ଡପିଟି କାନ୍ଦୁଥିଲେ ପିକ୍‌ଲୁର ମା ଓ ପିକ୍‌ଲୁ ଓ ତାର ଭାଇ ଭଉଣୀ । ମୁଁ ଏ ଦୃଶ୍ୟ ଦେଖିବା ମାତ୍ରେ ଭେଁ ଭେଁ ହୋଇ କାନ୍ଦି ଉଠିଲି ।

ସେଇ କରୁଣଦୃଶ୍ୟ ସ୍ମରଣ କରି ଆଜି ବି ମୋର ଆଖି ଛଳ ଛଳ ହୋଇ ଉଠୁଛି ।

ପିକ୍‌ଲୁର ବାପା ଥିଲେ ବ୍ୟାଙ୍କ୍ ମ୍ୟାନେଜର । ତାଙ୍କୁ ଗୋଟାଏ ବଡ଼ କ୍ୱାଟରସ୍ ମିଳିଥିଲା । ତାଙ୍କର କାର୍ ଥିଲା । ଘର ଆଗରେ ସୁନ୍ଦର ସୁନ୍ଦର ଫୁଲର ବଗିଚା ଥିଲା । ଘର ଭିତରେ ଦାମିକା ସୋଫା ପଡ଼ିଥିଲା । ଦୁଆର ଓ ଝରକାରେ ଖୁବ୍ ସୁନ୍ଦର ସୁନ୍ଦର ପରଦା ଲଗିଥିଲା । ତାଙ୍କ ଘରେ ଫ୍ରିଜ୍ ଥିଲା, ଆହୁରି ଅନେକ ଦାମିକା ଓ ସୁନ୍ଦର ଜିନିଷ ଥିଲା । ପିକ୍‌ଲୁର ବାପା ଆମ ମାନଙ୍କ ଭାଷାରେ ଥିଲେ ବଡ ଅଫିସର, ବଡଲୋକ । ସେ ଆଗରୁ ଓଡ଼ିଶା ବାହାରେ କେଉଁଠି ଥିଲେ । ସେଇଠୁ ବଦଳି ହୋଇ ଆମ ସହରକୁ ଆସିଥିଲେ । ପିକ୍‌ଲୁ ସପ୍ତମ ଶ୍ରେଣୀରେ ନାଁ ଲେଖାଇଲା । ଏକା ସେକ୍‌ସନ୍‌ରେ ପଢିବାରୁ ତା ସହିତ ମୋର ପରିଚୟ ଓ ବନ୍ଧୁତା ହୋଇଥିଲା ଅତ୍ୟନ୍ତ ସ୍ୱାଭାବିକ ଭାବରେ ।

ମୁଁ ଥିଲି ଗରିବ ଘରର ପିଲା । ମୋ ବାପା ଥିଲେ ଗୋଟିଏ ପ୍ରାଇମେରୀ ସ୍କୁଲର ଶିକ୍ଷକ । ମୋର ମନେପଡୁଛି, ମତେ ପ୍ରଥମେ ଯେଉଁଦିନ ପିକ୍‌ଲୁ ତାଙ୍କ ଘରକୁ ଡ଼ାକି ନେଇଥିଲା, ସେଦିନ ମୁଁ ତାଙ୍କର ସେଇ ଫାଟକ ଡ଼େଇଁ ଭିତରକୁ ଯିବାକୁ ସାହସ କରି ପାରୁନଥିଲି ମୋର ଦୈନ୍ୟ ପାଇଁ । ଏକ ହୀନମନ୍ୟତା ମତେ ପଛରୁ ଭିଡ଼ି ରଖୁଥିଲା । କିନ୍ତୁ ପିକ୍‌ଲୁ ମତେ ଘରଭିତରକୁ ଟାଣି ନେଇ ଯାଇଥିଲା । ଡ୍ରଇଂ ରୁମ୍‌ରେ ତାର ବାପା ଓ ମା ବସିଥିଲେ । ପିକ୍‌ଲୁ ମତେ ତାଙ୍କ ସହିତ ପରିଚୟ କରେଇ ଦେଲା, 'ମୋର ସାଙ୍ଗ ପ୍ରଭାତ ଚନ୍ଦ୍ର ନାୟକ । ତା'ରି କଥା ମୁଁ ସେଦିନ କହୁନଥିଲି । ଆମ କ୍ଲାସରେ ସେ ଫାଷ୍ଟ ହୁଏ ।'

"ଆସ ଆସ, ବସ ପ୍ରଭାତ ।" କହି ପିକ୍‌ଲୁର ବାପା ମତେ ସମ୍ଭାଷଣ କଲେ । ସୋଫା ଉପରେ ତାଙ୍କ ପାଖରେ ବସିବାକୁ ମୋର ଟିକିଏ ବି ଭରସା ପାଉନଥିଲା । ମୋର ସେଇ ଅପରିଷ୍କାର ପ୍ୟାଣ୍ଟ ଜାମା । 'ବସ୍ ଯା' କହି ମତେ ପିକ୍‌ଲୁ ତାଙ୍କ ପାଖରେ ବସାଇ ଦେଲା । ମୋ ପାଇଁ ତାହାଥିଲା ଏକ ଦାରୁଣ ଲଜ୍ଜା, ସଙ୍କୋଚ ଓ ଭୟମିଶ୍ରା ଅନୁଭୂତି । ତା ପରେ ତାଙ୍କ ଘରେ ସେଦିନ ମୋର ଭୁରି ଭୋଜନ । ପିକ୍‌ଲୁର ମା ମତେ ନିଜ ପିଲାପରି ଯତ୍ନ ଆଦର କରି ଖାଇବାକୁ ଦେଲେ ।

ପିକ୍‌ଲୁର ବାପା ଥିଲେ ଅତି ସରଳ ଓ ଅମାୟିକ ଲୋକ । ପତଳା ଓ ଟିକିଏ ଡ଼େଙ୍ଗା । ତାଙ୍କୁ ଦେଖିଲେ ବଡ଼ ଅଫିସର୍ ବୋଲି ଟିକିଏ ବି ଭୟ ଲାଗୁ ନ ଥିଲା । ତାଙ୍କର ବ୍ୟବହାର କଥାବାର୍ତ୍ତା ସବୁଥିଲା ସହଜ, ଅତି ସହଜ । ଖାଲି ମୁଁ ନୁହେଁ ଆମେ ଯେତେପିଲା ତାଙ୍କୁ ଘରକୁ ଯାଉ, ସମସ୍ତଙ୍କ ସହିତ ସେ ଭଲ

ବ୍ୟବହାର କରନ୍ତି । ସମସ୍ତଙ୍କ ନାଁ ମନେରଖିଥାନ୍ତି । ପିକ୍‌ଲୁର ମା ସମସ୍ତଙ୍କୁ ଖାଇବାକୁ ଦିଅନ୍ତି,—ପିଠା, ଅଣ୍ଡା, ପାଉଁରୁଟି, ବିସ୍କୁଟ, ସିଙ୍ଗଡ଼ା, ରସଗୋଲା, କଦଳୀ, କମଳା, ଆପେଲ କେତେ କଣ । ଯେତେବେଳେ ଯିଏ ତାଙ୍କ ଘରକୁ ଯାଏ କିଛି ନା କିଛି ଖାଇବାକୁ ସେ ବାଧ୍ୟ । ବହୁତ ଥର ମୁଁ ତାଙ୍କ ଘରେ ଖାଇଛି । ପିକ୍‌ଲୁ ଓ ତାର ଭାଇ ଭଉଣୀଙ୍କର ଜନ୍ମ ଦିନରେ ଆମେ ପିକ୍‌ଲୁର ଯେତେ ସାଙ୍ଗ ସାଥୀ ସମସ୍ତେ ତାଙ୍କ ଘରେ ଖାଇବା ପାଇଁ ନିମନ୍ତ୍ରଣ ପାଉ ।

ପିକ୍‌ଲୁର ମୁଁ ଥିଲି ଅନ୍ତରଙ୍ଗ ବନ୍ଧୁ । ତାଙ୍କ ଘରେ ମଧ୍ୟ ମୋ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ଥିଲା । ମୁଁ ଭଲ ପଢ଼େ ବୋଲି ।

ଆମ ବନ୍ଧୁମାନଙ୍କର କେନ୍ଦ୍ର ବିନ୍ଦୁ ଥିଲା ପିକ୍‌ଲୁ । ଆମର ଯେତେ ଖେଳ ସରଞ୍ଜାମ ସବୁ ଯୋଗାଏ ପିକ୍‌ଲୁ । ଆମେମାନେ କେବଳ ଖେଳିବା କଥା । ତା ଛଡ଼ା ପିକ୍‌ଲୁ ଘରେ ଆମ କେତେକଙ୍କ ପାଇଁ ଆଉ ଗୋଟିଏ ସ୍ୱତନ୍ତ୍ର ଆକର୍ଷଣ ଥିଲା । ତାହା ହେଉଛି ତାର ଲାଇବ୍ରେରୀ । ପିକ୍‌ଲୁର ବାପା ତା ପାଇଁ ଅନେକ ବହି କିଣିଥିଲେ । ଗୋଟିଏ ଆଲମାରୀ ପିଲାଙ୍କ ବହିରେ ଭର୍ତ୍ତି ହୋଇ ରହିଥିଲା । ବହୁତ ପିଲାଙ୍କ ପତ୍ରିକା ବି ତାଙ୍କର ଆସୁଥିଲା । ପ୍ରତି ମାସରେ ନୂଆ ନୂଆ ବହି କିଣା ହେଉଥିଲା । ଆମେ ସମସ୍ତେ ମନଇଚ୍ଛା ବହି, ପତ୍ର ପତ୍ରିକା ନେଇ ପଢ଼ିବାର ସୁଯୋଗ ପାଉଥିଲୁ ।

ପିକ୍‌ଲୁର ବାପା ଆମମାନଙ୍କୁ କହୁଥିଲେ, ତୁମେମାନେ ତିନିଟା କଥା ମନେରଖ । ପିଲାମାନଙ୍କର ତିନୋଟି କାମ—ଖାଇବା, ଖେଳିବା ଓ ପଢ଼ିବା । ଖାଇବା ବେଳେ ଯାହା ମିଳିଲା ମନ ଆନନ୍ଦରେ ପେଟ ପୂରେଇ ଖାଅ । ଖେଳିବା ବେଳେ ମନ ଆନନ୍ଦରେ ନାଚ କୁଦ ଖେଳ । ପଢ଼ିବା ବେଳେ ମନ ଖୁସୀରେ ମନ ଲଗାଇ ପଢ଼ । ଏଥିରୁ କୌଣସି ଗୋଟିଏ କଥାରେ ତ୍ରୁଟି କଲେ ଚଳିବ ନାହିଁ ।

ସପ୍ତମ ଶ୍ରେଣୀରେ ବୃତ୍ତି ପରୀକ୍ଷା ଫଳ ଯେଉଁ ଦିନ ବାହାରିଲା ସେଦିନ ତାଙ୍କ ଘରେ ମୋ ପାଇଁ ଥିଲା ସ୍ୱତନ୍ତ୍ର ନିମନ୍ତ୍ରଣ । ମୁଁ ଜିଲ୍ଲାରେ ପ୍ରଥମ ସ୍ଥାନ ଅଧିକାର କରିଥିଲି । ପିକ୍‌ଲୁ ବି ବୃତ୍ତି ପାଇଥିଲା । ଭୂରି ଭୋଜନ ପରେ ମୋ ପାଇଁ ସ୍ୱତନ୍ତ୍ର ଉପହାର ବି ଥିଲା ତିନି ଖଣ୍ଡ ବହି । ଏବେ ବି ମନେଅଛି, ସେ ବହିରୁ ଖଣ୍ଡିଏ ଥିଲା ମହାତ୍ମାଗାନ୍ଧୀଙ୍କ ଆତ୍ମ ଜୀବନୀ । ଆଉ ଖଣ୍ଡିଏ ଡିକେନସ୍‌ଙ୍କର ସଂକ୍ଷିପ୍ତ ଡ଼ାଭିଡ କପରଫିଲଡ୍ । ବହି ସାଙ୍ଗରେ ଥିଲା ଭଲ ଜାମା ପ୍ୟାଣ୍ଟ ଥିବା ଗୋଟିଏ ପ୍ୟାକେଟ୍ ଓ ଗୋଟିଏ ପ୍ୟାକେଟ୍ ସନ୍ଦେଶ । ରାତି ରେ ତାଙ୍କ କାର୍‌ରେ ଆଣି ପିକ୍‌ଲୁ ଓ ତାର

ବାପା ମତେ ଆମଘରେ ଛାଡ଼ିଦେଇ ଯାଇଥିଲେ । ମତେ ବିଦାୟ ଦେବାବେଳେ ପିକ୍‌ଲୁର ବାପା କହିଲେ, 'ପ୍ରଭାତ, ସାବଧାନ । ପିକ୍‌ଲୁ ଆଗାମୀ ପରୀକ୍ଷାରେ ତୁମର ପ୍ରଥମ ସ୍ଥାନଟା ଅଧିକାର କରି ନେବାକୁ ମନେ ମନେ ସଂକଳ୍ପ କରିଛି । ତୁମେ ଯେପରି ତୁମ ସ୍ଥାନରୁ ହଟି ନଯାଅ ।

ପିକ୍‌ଲୁର-ବାପା, ଗୋରା ଚକ୍‌ଚକ୍ ଦେହ, ଲମ୍ବା ଶରୀର, ମୁହଁରେ ସବୁବେଳେ ଯେପରି ପ୍ରସନ୍ନତା ପୂରି ରହିଥାଏ । ବେଶ ଭୂଷାରେ ସାଧାରଣ । ବ୍ୟବହାରରେ ଅମାୟିକ । ପିକ୍‌ଲୁର ସେଇ ଦେବୋପମ ବାପା ଆଉ ଇହ ସଂସାରରେ ନଥିଲେ । ଏ ଦାରୁଣ ସତ୍ୟକୁ ମୁଁ ବିଶ୍ୱାସ କରି ପାରୁନଥିଲି । ସମସ୍ତେ ତାଙ୍କ ଗୁଣ ସ୍ମରଣ କରୁଥିଲେ । ସମସ୍ତେ ତାଙ୍କର ପ୍ରଶଂସା କରୁଥିଲେ । ସେ ଥିଲେ ଗରିବ ଦୟାଳୁ । କାହାକୁ କେତେ ପ୍ରକାର ସାହାଯ୍ୟ କରିଛନ୍ତି, କାହାର କେତେ ଉପକାର କରିଛନ୍ତି । ସମସ୍ତେ ଏସବୁ ମନେ ପକାଇ ହାହାକାର କରୁଥିଲେ । ବୁକୁ ଫଟାଇ କାନ୍ଦୁଥିଲେ ପିକ୍‌ଲୁର ମା, ପିକ୍‌ଲୁ, ତାର ସାନ ଭଉଣୀ । ମୁଁ ବି କାନ୍ଦୁଥିଲି ।

ସାତ ଆଠଦିନ ପରେ ପିକ୍‌ଲୁ ହେଉନା ଆମ ସହର ଛାଡ଼ି ଚାଲିଗଲେ । ସେଇ ସାତ ଆଠଦିନ ମୁଁ ପିକ୍‌ଲୁ ଘରକୁ ସବୁଦିନ ଯାଇଛି । ପିକ୍‌ଲୁ ମୁହଁପୋତି ବସିଥାଏ । ତାର ବିଷର୍ଣ୍ଣ କରୁଣ ମୁଖ ଦେଖିଲେ ମୋ ଛାତି ଫାଟିଗଲା ପରି ଲାଗେ । ସେ କିଛି କଥା କହେନା । ମୁଁ ବି ତାକୁ କିଛି ସାନ୍ତ୍ୱନା ଦେଇପାରେ ନା । କେବଳ ଘଣ୍ଟା ଘଣ୍ଟା ଧରି ତା ପାଖରେ ବସେ । ତା ପରେ 'ଯାଉଚି' କହି ଚାଲିଆସେ । ପିକ୍‌ଲୁ ପଦଟିଏ ବି କଥା କହେନା । ମୁଁ ବୁଝିପାରେ ଗଭୀର ବେଦନାରେ ତାର ବାକ୍‌ରୁଦ୍ଧ ହୋଇ ଯାଇଥିଲା । ପିକ୍‌ଲୁର ବାପା ତା ପାଇଁ ଖାଲି ବାପା ନଥିଲେ । ଆମ ସମସ୍ତଙ୍କ ପାଇଁ 'ବାପା' ଯାହା ପିକ୍‌ଲୁର ବାପା ତାହା ନଥିଲେ । ପିକ୍‌ଲୁ ତା ବାପାଙ୍କୁ ଆଦୌ ଭୟ କରୁନଥିଲା । କିନ୍ତୁ ଭକ୍ତି କରୁଥିଲା, ଶ୍ରଦ୍ଧା କରୁଥିଲା, ଭଲ ପାଉଥିଲା । ସେ ଥିଲେ ତାର ପରମ ଶୁଭାକାଂକ୍ଷୀ ବନ୍ଧୁ । ସେଇ ବାପାଙ୍କର ଆକସ୍ମିକ ମୃତ୍ୟୁ ତାର ପିଲାମନକୁ ଏକାବେଳେକେ ଏକ ଦୁର୍ଦ୍ଦାନ୍ତ ଝଡ଼ ପରି ଭାଙ୍ଗି ପକେଇଥିଲା ।

ସେଇ ସାତ ଆଠଦିନ ପିକ୍‌ଲୁ ଘରକୁ ମୁଁ ବାରମ୍ବାର ଯାଇଛି । ମୋର ବାପା ମା ମଧ୍ୟ ଯାଇଛନ୍ତି । କିନ୍ତୁ ଏତେ ବଡ଼ ବିପତ୍ତିରେ ଆମେ ତାଙ୍କୁ କଣ ବା ସାନ୍ତ୍ୱନା ଦେଇ ପାରିଥାନ୍ତୁ । ସେମାନେ ଶେଷରେ ଚାଲିଗଲେ । ଯିବାବେଳେ ମଧ୍ୟ ପିକ୍‌ଲୁ ମତେ କଥା କହିଲା ନାହିଁ । ମୁଁ ବେ ବେ ହୋଇ କାନ୍ଦିଲି । ସେ ବି

କାନ୍ଦିଲି । ତାର ମା ବି କାନ୍ଦିଲେ । କେତେ ସୁନ୍ଦର ତାଙ୍କର ମା । କିନ୍ତୁ ମାତ୍ର ଆଠଦିନ ଭିତରେ ସେ ଯେପରି ଅନେକ ବଦଳି ଯାଇଥିଲେ । କାନ୍ଦି କାନ୍ଦି ତାଙ୍କର ଆଖି ମୁହଁ ଫୁଲି ଯାଇଥିଲା ।

ପିକ୍‌ଲୁ ଚାଲିଗଲା । ଯିବାବେଳେ ମୁଁ ତାଙ୍କର ଠିକଣା ମାଗି ରଖିପାରିଲି ନାହିଁ । ସେ ବି ଚିଠି ଲେଖି ତାର ଠିକଣା ଜଣାଇଲା ନାହିଁ । ତା ସହିତ ସମ୍ପୂର୍ଣ୍ଣ ବିଚ୍ଛେଦ ହୋଇଗଲା । ମୁଁ ଅନେକ ଦିନଧରି ତାକୁ ଝୁରି ହୋଇଛି । ତାକୁ ସ୍ୱପ୍ନ ଦେଖିଛି । ମନେ ମନେ ତାକୁ ଖୋଜିଛି । ତାକୁ ଆଉ ପାଇନାହିଁ । ସେ କୁଆଡ଼େ ପୃଥିବୀର ଅଗଣିତ ଜନ ସମୁଦ୍ରରେ ମିଶିଗଲା । ବାପା କହୁଥିଲେ, ସୁବ୍ରତବାବୁ ଏତେ ବଡ଼ ଅଫିସର ଥିଲେ । ମାସକୁ ପାଞ୍ଚ ହଜାର ଟଙ୍କା ଦରମା ପାଉଥିଲେ । କିନ୍ତୁ ତାଙ୍କର ସଞ୍ଚୟ ବୋଲି କିଛି ନଥିଲା । ତାଙ୍କ ନିଜର ରହିବା ଘର ବି ନଥିଲା । ଯେତେଯାହା ସେ ଅର୍ଜନ କରୁଥିଲେ ସବୁ ବିନା ଦ୍ୱିଧାରେ ଖର୍ଚ୍ଚ କରି ପକାଉଥିଲେ । ମୃତ୍ୟୁ ବେଳକୁ ତାଙ୍କର ସଂଚୟ ତ କିଛି ନଥିଲା, ଅଧିକନ୍ତୁ ଋଣ ଥିଲା ବହୁତ ।

ସମୟ ତାର ଗତାନୁ ଗତିକ ଛନ୍ଦରେ ଆଗେଇ ଚାଲିଲା । କାଳ କ୍ରମେ ମୁଁ ପିକ୍‌ଲୁକୁ ଭୁଲିଗଲି । ମୋର କର୍ତ୍ତବ୍ୟ ବୋଧ ମତେ ସବୁ ଭୁଲାଇଦେଲା । ମୁଁ ଆଗକୁ ଆଗକୁ ମାଡ଼ି ଚାଲିଲି । ମାଟ୍ରିକ ପରୀକ୍ଷାରେ ସାରା ରାଜ୍ୟରେ ପ୍ରଥମ ହେଲି । ବି.ଏ,ରେ ବେଷ୍ଟ୍ ଗ୍ରାଜୁଏଟ୍ ହୋଇ । ଏମ୍,ଏ ରେ ପ୍ରଥମ ଶ୍ରେଣୀରେ ପ୍ରଥମସ୍ଥାନ ପାଇଲି । ଆଇ, ଏ, ଏସ୍ ପରୀକ୍ଷାରେ ଉଚ୍ଚସ୍ଥାନ ରଖି ଉତ୍ତୀର୍ଣ୍ଣ ହେଲି । ବଡ଼ ଘରେ ବିବାହ କଲି । ମୋର ସ୍ତ୍ରୀ ଓ ସନ୍ତାନ ନେଇ ପରିବାର ଗଢ଼ି ଉଠିଛି । ବିଭିନ୍ନ ସ୍ଥାନରେ ଏସ୍,ଡି,ଓ ଏବଂ ଏ,ଡ଼ି,ଏମ୍ ଭାବରେ କାମ କରି ମୁଁ ଆଜି ଜିଲ୍ଲାପାଳ ଭାବରେ ଦାୟିତ୍ୱ ନେଇଛି ।

କିନ୍ତୁ ଆଜି ଯେ ୧୭ ବର୍ଷ ତଳର ସ୍ମୃତି ମତେ କେତେ ବାଧିତ କରୁଛି ସେକଥା ମୁଁ କାହାକୁ କହିବି । ପିକ୍‌ଲୁ ବୋଧହୁଏ ମତେ ଚିହ୍ନି ପାରିନି । କିମ୍ବା ଯଦି ଚିହ୍ନି ପାରିଥାଏ, ତେବେ ତାର ସ୍ଥାନ ବିଷୟରେ ତୀବ୍ର ସଚେତନତା ତାକୁ ମୋ ପାଖରେ ତାର ପୁରୁଣା ବନ୍ଧୁତାର ଛିଣ୍ଡା ସୂତାକୁ ଯୋଡ଼ିବାକୁ ସାହସ ଦେଇନାହିଁ । ସେ କିଣ ମତେ ଜିଲ୍ଲାପାଳ ଭାବରେ ଦେଖି ହଡ଼ି ବଡ଼େଇ ଯାଇଥିବ !

ପିକ୍‌ଲୁ କଣ ଥିଲା, କଣ ହୋଇଛି ।

ଅଷ୍ଟମ ଶ୍ରେଣୀରେ ଇଂରାଜୀ ଶିକ୍ଷକ ଥିଲେ, ହରିଶ୍ଚନ୍ଦ୍ର ବାବୁ । ଇଂରାଜୀକୁ ସେ କେବେହେଲେ ଓଡ଼ିଆରେ ବୁଝାଇ ଦିଅନ୍ତି ନାହିଁ । To be born with a Silver Spoon in one's mouth", ଏଇ କଥାର ଅର୍ଥ ବୁଝାଇ ସାରି ସେ କ୍ଲାସରେ ଉଦାହରଣ ଦେଇ କହିଥିଲେ 'Suparimal is born with a Silver spoon in his month ; ଏଇ ଉଦାହରଣରୁ, ସେ Phraseର ଅର୍ଥଟା ମୋ ପାଖରେ ଯେତିକି ପ୍ରାଞ୍ଜଳ ହୋଇ ଯାଇଥିଲା । କିନ୍ତୁ ଆଜି ଭାଗ୍ୟର ଏଡ଼ି ବିଚିତ୍ର ବିଧାନର ଅର୍ଥ ଯେ ମୋ ପାଖରେ ଆଦୌ ସ୍ପଷ୍ଟ ନୁହେଁ ।

ପିକ୍‌ଲୁ କଣ ଥିଲା । କଣ ହୋଇଛି ।

ଗୋଟିଏ ମୁହୂର୍ତ୍ତ ଭିତରେ ନିୟତି ଅପହରଣ କରି ନେଲା ତାର ଜୀବନର ସମସ୍ତ ଶ୍ରୀ ଓ ସମସ୍ତ ଐଶ୍ୱର୍ଯ୍ୟମୟ ସମ୍ଭାବନା । ଆଉ ତାକୁ ଛାଡ଼ି ଦେଇଗଲା ଦୀନ ଦୟନୀୟ କରି । ଦାରିଦ୍ର୍ୟ ଓ ଅଭାବର ପୀଡ଼ନ, ଯନ୍ତ୍ରଣା ଓ ଅପମାନ ମୋ ପାଇଁ ତ ଅବୋଧ୍ୟ ନୁହେଁ । ପିକ୍‌ଲୁକୁ ହୁଏତ ସବୁ ସହ୍ୟ କରିବାକୁ ପଡ଼ୁଛି । ତାର ସୁକୁମାର ମନର ସ୍ୱପ୍ନ ଭାଙ୍ଗି ଯାଇଛି । ସୁଖ ସ୍ୱାଚ୍ଛନ୍ଦ୍ୟ ବଞ୍ଚିବାର ଦାୟିତ୍ୱ ତାକୁ ଅକାଳ ସ୍ଥବିର କରି ପକେଇଛି । ତାର ମା ରାଜରାଣୀର ଆସନରୁ ତଳକୁ ଖସିପଡ଼ି ମୋରି ମା'ପରି ହୁଏତ ତିଳତିଳ କରି ନିଜକୁ କ୍ଷୟକରି ଯାଇଛନ୍ତି ପିଲା ଭିନିଟାଙ୍କୁ ମଣିଷ କରିବା ପାଇଁ । ତାଙ୍କର ସେଇ ଚେଷ୍ଟାର ଫଳରେ ପିକ୍‌ଲୁ କିରାଣୀଟିଏ ମାତ୍ର ହୋଇପାରିଛି । ଆଉ ତାଙ୍କର ସେଇ ବଡ଼ ଟିଅଣ୍ଟା—ବଡ଼ ବଡ଼ ତାର ସୁନ୍ଦର ଆଖି ଦୁଇଟା କଥା ମୋର ଏବେ ବି ମନେପଡ଼ୁଛି । ସେ ହୁଏତ ଗୋଟିଏ ସ୍କୁଲ ଶିକ୍ଷକ କିମ୍ବା କିରାଣୀକୁ ବାହାହୋଇ କେଉଁଠି ଘର କରିଥିବ ।

ମୁଁ କଣ ନିଜେ ପିକ୍‌ଲୁକୁ ଡାକି ନିଜର ପୁରୁଣା ବନ୍ଧୁତାର ଖିଅ ଯୋଡ଼ି ଦେବି ? ପିକ୍‌ଲୁକୁ ସାହାଯ୍ୟ କରିବି, ଆର୍ଥିକ ସାହାଯ୍ୟ । ତାର ଘରକୁ ଯାଇ ତାର ମା'ଙ୍କୁ ପ୍ରଣାମ କରି ସେଇ ଅତୀତ ଦିନରେ ସେ ମତେ ଯେଉଁ ଅପରିମେୟ ସ୍ନେହର ସୌଭାଗ୍ୟ ଦେଇଥିଲେ ସେଥିପାଇଁ କୃତଜ୍ଞତା ଜଣାଇ ଆସିବି ?

ନାଁ—ଏସବୁ କରିବା ବୋଧହୁଏ ଠିକ୍ ହେବନାହିଁ । ହୁଏତ ପୁରାତନ ସ୍ମୃତିର ବିଭିଷିକାକୁ ମୁଁ କେବଳ ସେମାନଙ୍କ ଆଗରେ ଖୋଲି ଧରିବି କିମ୍ବା ତାଙ୍କର ଏଇ ଦୀନ ଅବସ୍ଥା ନିକଟରେ ମୋର ଐଶ୍ୱର୍ଯ୍ୟକୁ ଟେକି ଧରି ତାଙ୍କୁ ଆଘାତ ଦେବି । ଏ ସବୁ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ଅତୀତର ସେଇ ଦିନ ଗୁଡ଼ିକ ମୋ ପାଇଁ ବି ଅତୀବ ମୂଲ୍ୟବାନ୍ । ମୁଁ ତାକୁ ନିଜର ବଡ଼ିମାହାରି ଆଜି କ୍ଷୁର୍ଣ୍ଣ କରି ଦେଇ ପାରେ ନା । ପିକ୍‌ଲୁ ସହିତ ମୋର ବନ୍ଧୁତା, ଅନ୍ତରାତ୍ମାର ବନ୍ଧୁତା ।

ସେ ବନ୍ଧୁତା ମୋର ଗଭୀରତମ ଅନ୍ତରରେ ଗୋପନ ହୋଇ ରହୁ ପଛେ ତାକୁ ପ୍ରକଟିତକର ମୁଁ ତାକୁ ଟିକିଏ ହେଲେ ମ୍ଳାନ କର ଦେବାକୁ ଚାହେଁ ନା ।

ମୋ ପାଇଁ ସୁପରମଲ ମହାପାତ୍ର ପିକ୍‌ଲୁ ନୁହେଁ । କାରଣ ପିକ୍‌ଲୁ ମୋପାଇଁ କେବେ ସୁପରମଲ ମହାପାତ୍ର ହୋଇ ନଥିଲା ।

୮ । ୧୦ । ୭୨

ବଲାଙ୍ଗୀର



# ଗୋଟିଏ ସଭାର ବିବରଣୀ

ଦିଲୀପ ମହାନ୍ତି ଚିଠିଟି ପଢ଼ିସାରି ଲଫାପାଟାକୁ ଟାଣିଆଣି ଠିକଣା ଟାକୁ ଭଲକରି ଦେଖିଲେ ।

ଠିକଣା ଠିକ୍ ଥିଲା — ଦିଲୀପ ମହାନ୍ତି, ଡେପୁଟି ଚିଫ୍ ଇଂଜିନିୟର ଇତ୍ୟାଦି ।

ଚିଠିର ପ୍ରେରକ ତାଙ୍କର ଅପରିଚିତ ନୁହଁନ୍ତି । ନିଜ ରାଜ୍ୟ ବାହାରେ ଦୀର୍ଘକାଳ ଚାକିରି କରିବା ଫଳରେ ସେ ନିଜ ଲୋକଙ୍କଠାରୁ ବହୁତ ଦୂରେଇ ଯାଇଛନ୍ତି । ଏକ ସମୟରେ ଏକାନ୍ତ ଅନ୍ତରଙ୍ଗ ଥିବା ବନ୍ଧୁ ମାନଙ୍କର ନାଁ ସେ ବର୍ତ୍ତମାନ ପ୍ରାୟ ଭୁଲିଗଲେଣି । ଆତ୍ମୀୟ ସ୍ୱଜନ ମାନଙ୍କ ସହିତ କଦବା କ୍ୱଚିତ୍ ପତ୍ର ମାଧ୍ୟମରେ ସମ୍ପର୍କ ରହିଛି ମାତ୍ର । ଏହିପରି ଅବସ୍ଥାରେ ତାଙ୍କ ରାଜ୍ୟର ଜଣେ ଖ୍ୟାତନାମା ବ୍ୟକ୍ତିଙ୍କଠାରୁ ଖଣ୍ଡିଏ ଚିଠିପାଇ ସେ ଚିଠିଟି ତାଙ୍କର କି ନୁହେଁ ଭଲକରି ପରୀକ୍ଷା କରିନେବା ନିଶ୍ଚୟ ଦରକାର ଥିଲା ।

ଚିଠିଟି ଲେଖିଥିଲେ ରାଜ୍ୟର ଉପମୁଖ୍ୟମନ୍ତ୍ରୀ କୁବେର ଦଳେଇ ।

କୁବେର ଦଳେଇ ତାଙ୍କର ଗାଁ ପାଖର ଲୋକ । ଏକା ସାଙ୍ଗରେ ଆଠବର୍ଷ ଅର୍ଥାତ୍ ଚତୁର୍ଥ ଶ୍ରେଣୀଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ତା'ପରେ ଉଭୟେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ଯାଇଛନ୍ତି । ଦୀର୍ଘ ୩୦ ବର୍ଷ ଭିତରେ ଆଉ ଥରଟିଏ ବି ଦେଖା ସାକ୍ଷାତ ହୋଇନାହିଁ । ଏହା ଭିତରେ ସରପଞ୍ଚରୁ ଉଠି ଉଠି କୁବେର ଦଳେଇ ହୋଇଛନ୍ତି ଉପମୁଖ୍ୟମନ୍ତ୍ରୀ ଏବଂ ଆସିଷ୍ଟାଣ୍ଟ ଇଂଜିନିୟର ରୁ ଉଠି ଉଠି ଦିଲୀପ ମହାନ୍ତି ହୋଇଛନ୍ତି ଏକ ପ୍ରସିଦ୍ଧ କମ୍ପାନୀର ଡେପୁଟି ଚିଫ୍ ଇଂଜିନିୟର ।

କୁବେର ଦଲେଇଙ୍କ ଚରିତ୍ର ଥିଲା ନହାତ ଅପ୍ରତ୍ୟାଶିତ । ଲେଖିଥିଲେ, ସ୍ଥାନୀୟ ଲୋକମାନଙ୍କର ଅଭାବ ପୂରଣ କରିବାପାଇଁ ସେ ସେମାନଙ୍କର ପୁରାତନ ହାଇ-ସ୍କୁଲଟିକୁ ଏକ କଲେଜରେ ପରିଣତ କରିବାକୁ ଯାଉଛନ୍ତି । ସେହି କଲେଜର ଉଦ୍‌ଘାଟନ ଉତ୍ସବରେ ପୁରୋଧା ଭାବରେ ଯୋଗ ଦେବାପାଇଁ ସେ ଦିଲୀପ ମହାନ୍ତିଙ୍କୁ ସନିର୍ବନ୍ଧ ନିମନ୍ତ୍ରଣ କରୁଛନ୍ତି ଏବଂ ସେ ନାସ୍ତିବାଚକ ଉତ୍ତର ଶୁଣିବାକୁ ଆଦୌ ପ୍ରସ୍ତୁତ ନୁହଁନ୍ତି ।

ଅଗତ୍ୟା ଦିଲୀପ ମହାନ୍ତିଙ୍କୁ ମନ୍ତ୍ରୀ ମହୋଦୟ ତଥା ତାଙ୍କର ଏକଦା ପଢ଼ାସାଥୀ କୁବେର ଦଲେଇଙ୍କର ନିମନ୍ତ୍ରଣ ରକ୍ଷା କରିବାକୁ ପଡ଼ିଲା । ନିର୍ଦ୍ଦିଷ୍ଟ ତାରିଖରେ ଦିଲୀପ ମହାନ୍ତି ତାଙ୍କର ଘର ପାଖ ଷ୍ଟେସନ୍‌ରେ ଓହ୍ଲାଇଲେ । ଅଭାବିତ ଭାବରେ ମନ୍ତ୍ରୀ ମହୋଦୟଙ୍କର କାର୍ ତାଙ୍କ ପାଇଁ ଅପେକ୍ଷା କରି ରହି-ଥିଲା । ମନ୍ତ୍ରୀ ମହୋଦୟ ଅବଶ୍ୟ ନିଜେ ଆସି ପାରି ନଥିଲେ ବୋଲି ଦୁଃଖ କରି ସମ୍ବାଦ ପଠାଇଥିଲେ । ତାଙ୍କୁ ପାଛୋଟି ନେବାପାଇଁ କଲେଜର ଅଧ୍ୟକ୍ଷ ଡ଼ଃ. ସଞ୍ଜୀବ ମିଶ୍ର, କଲେଜ ପରିଚାଳନା ସମିତିର ସଭାପତି ତଥା ତାଙ୍କର ହାଇସ୍କୁଲର ଅବସର ପ୍ରାପ୍ତ ପ୍ରଧାନ ଶିକ୍ଷକ ନରହରିବାବୁ ଏବଂ ଅତ୍ୟନ୍ତ ଅପରିଚିତ କେତେଜଣ କଲେଜ ଛାତ୍ର ଷ୍ଟେସନ୍‌ରେ ପୁଷ୍ପମାଳ୍ୟ ସହିତ ଉପସ୍ଥିତ ଥିଲେ ।

ଏସବୁ ଦିଲୀପ ମହାନ୍ତିଙ୍କର ବହୁତ ଅସ୍ୱସ୍ତିବୋଧର କାରଣ ହୋଇଥିଲା ଅବଶ୍ୟ । ସେ ଏତେଗୁଡ଼ାଏ ଅଭ୍ୟର୍ଥନାର ଆବଶ୍ୟକତା ଥିଲା ବୋଲି ଆଦୌ ଅନୁଭବ କରୁ ନଥିଲେ । ନିଜ ଅଞ୍ଚଳରେ ପ୍ରତିଷ୍ଠିତ ହୋଇଥିବା କଲେଜପାଇଁ ତାଙ୍କର ନିଜର ତ କିଛି ଅବଦାନ ନାହିଁ । ତେଣୁ ତାର ଉଦ୍‌ଘାଟନ ଉତ୍ସବରେ ତାଙ୍କର କୌଣସି ସମ୍ମାନ ପ୍ରାପ୍ୟ ନୁହେଁ ସେ ଏହାହିଁ ବୋଧ କରୁଥିଲେ । ପୂର୍ବତନ ପ୍ରଧାନ ଶିକ୍ଷକ ନରହରିବାବୁଙ୍କ ପାଦ ଛୁଇଁ ସେ ପ୍ରଣାମ କରିଥିଲେ ଏବଂ ତାଙ୍କ ପାଖରେ କାର୍‌ରେ ବସିବାବେଳେ ଯଥା ସମ୍ଭବ ସଙ୍କୁଚିତ ହୋଇ ବସିଥିଲେ । କଲେଜରେ ପହଞ୍ଚିବା ମାତ୍ରେ ସେଠାରେ ତାଙ୍କୁ ପାଛୋଟି ନେବାପାଇଁ ଆଗେଇ ଆସିଥିଲେ ସ୍ୱୟଂ ମାନ୍ୟବର ଉପମୁଖ୍ୟମନ୍ତ୍ରୀ କୁବେର ଦଲେଇ । ଦେଖିବାମାତ୍ରେ ତାଙ୍କୁ ଗଭୀର ଆଲିଙ୍ଗନ କରି ପକେଇଲେ । ଦିଲୀପ ମହାନ୍ତିଙ୍କର ଚେହେରାରେ ବିଶେଷ ପରିବର୍ତ୍ତନ ହୋଇ ନଥିଲା । କିନ୍ତୁ କୁବେର ଦଲେଇଙ୍କର ଚେହେରାରେ ଏକ ଆମୂଳ ପରିବର୍ତ୍ତନ ଘଟି ଯାଇଥିଲା । ଦିଲୀପ ମହାନ୍ତି ନିଜକୁ ନିଜେ କହିଲେ ଯେ ଅନ୍ୟ ସ୍ଥାନରେ କୁବେର ଦଲେଇଙ୍କୁ ଦେଖିଥିଲେ ସେ କଦାପି ତାଙ୍କୁ ଚିହ୍ନିପାରି ନଥାନ୍ତେ ।

ପ୍ରଧାନ ଅତିଥିଙ୍କ ପାଇଁ କୁବେର ଦଳେଇଙ୍କର ଆୟୋଜନରେ କୌଣସି ତ୍ରୁଟି ନଥିଲା । ତାଙ୍କୁ ଷ୍ଟେସନରୁ ପାଛୋଟି ଆଣିବାଠାରୁ ତାଙ୍କର ବିଦାୟ ପର୍ଯ୍ୟନ୍ତ ଯାହା କିଛି କରଣୀୟ ସେ ସବୁ ଆଗରୁ ଠିକ୍ କରି ଦେଇଥିଲେ ଏବଂ ନିଖୁଣ ଭାବରେ ସେ ଗୁଡ଼ିକ କାର୍ଯ୍ୟରେ ପରିଣତ ହେଉଥିଲା ।

ସେହିଦିନ ସନ୍ଧ୍ୟାରେ କଲେଜର ଉଦ୍‌ଘାଟନ ଉତ୍ସବ ଏବଂ ଠିକ୍ ତା ପରେ ଥିଲା ସାଧାରଣ ସଭା । ମାନ୍ୟବର ଉପ ମୁଖ୍ୟମନ୍ତ୍ରୀଙ୍କର ଉପସ୍ଥିତି ପାଇଁ ବୋଧହୁଏ ସେ ଦିନ ସାଧାରଣ ସଭାରେ ପ୍ରବଳ ଲୋକ ସମାବେଶ ହୋଇଥିଲା ।

ସଭା ଆରମ୍ଭ ହେଲା ।

ପ୍ରଥମେ କଲେଜ ପରିଚାଳନା ସଭାପତି କଲେଜ ସମ୍ପର୍କରେ ଏକ ରିପୋର୍ଟ ପାଠକଲେ । ସେଥିରେ ଥିଲା କଲେଜ ପ୍ରତିଷ୍ଠା ପାଇଁ କରା ଯାଇଥିବା ଉଦ୍ୟମର ଏକ ବିବରଣୀ । ବିଶେଷ ଭାବରେ ଉପ ମୁଖ୍ୟମନ୍ତ୍ରୀଙ୍କ ପ୍ରତି ଗଭୀର କୃତଜ୍ଞତା ପ୍ରକାଶ । ଏହାର ଉତ୍ତରୋତ୍ତର ଉନ୍ନତି ପାଇଁ ସ୍ଥାନୀୟ ଲୋକସାଧାରଣଙ୍କର ସହଯୋଗ ଭିକ୍ଷା । ତା'ପରେ କଲେଜର ଅଧ୍ୟକ୍ଷଙ୍କର ଭାଷଣ । କେତେଜଣ ସ୍ଥାନୀୟ ଭଦ୍ର-ବ୍ୟକ୍ତିଙ୍କର ମନ୍ତ୍ରୀ ମହୋଦୟଙ୍କର ପ୍ରଚଣ୍ଡ ପ୍ରଶସ୍ତି ସହିତ ଦୀର୍ଘ ଜୀବନ କାମନା କରି ଭାଷଣ ଏବଂ ତା'ପରେ ପ୍ରଧାନ ଅତିଥିଙ୍କର ଭାଷଣ ।

ଦିଲୀପ ମହାନ୍ତିଙ୍କୁ ପ୍ରକୃତରେ ଏସବୁ କିଛି ଭଲ ଲାଗୁ ନଥିଲା । ରାଜନୀତି ମିଶା ଶିକ୍ଷାନୀତିରେ ତାଙ୍କର ଆଗ୍ରହ ନଥିଲା । କୁବେର ଦଳେଇଙ୍କର ନିମନ୍ତ୍ରଣ ରକ୍ଷାକରି ସେ ଭୁଲ୍ କରିନାହାନ୍ତି ଏଭଳି ଏକ ବିଶ୍ୱାସ ତାଙ୍କ ମନକୁ ଆସୁନଥିଲା । ତାଙ୍କୁ ପ୍ରଧାନ ଅତିଥି କରିବାରେ ଏବଂ ତାଙ୍କୁ ଏପରି ଅପ୍ରତ୍ୟାଶିତ ଭାବେ ଅଭ୍ୟର୍ଥିତ କରିବାରେ କୁବେର ଦଳେଇଙ୍କର କି ଉଦ୍ଦେଶ୍ୟ ଥାଇପାରେ ସେ ଜାଣି ପାରି ନଥିବାରୁ ମନେ ମନେ ଶଙ୍କିତ ହେଉଥିଲେ । ବିଶେଷତଃ ଏହିଭଳି ଅନୁଷ୍ଠାନ ମାନଙ୍କରେ ସରକାରୀ ସାହାଯ୍ୟ ଆଶାରେ ମନ୍ତ୍ରୀ କିମ୍ବା ବିଶେଷ ଦାନ ପ୍ରତ୍ୟାଶାରେ ଶିଳ୍ପପତି, ବେପାରୀ ବ୍ୟବସାୟୀ ପ୍ରଭୃତିଙ୍କୁ ପ୍ରଧାନ ପୁରୋଧାର ସମ୍ମାନ ମିଳିଥାଏ ଏବଂ ସେମାନେ ମଧ୍ୟ ଯେ ଯଥୋଚିତ ମୂଲ୍ୟଦେଇ ସେହି ସମ୍ମାନ ପାଇଁ ଲାଳାୟିତ ଏହା ଅନସ୍ୱୀକାର୍ଯ୍ୟ । କିନ୍ତୁ ବର୍ତ୍ତମାନ କ୍ଷେତ୍ରରେ ଦିଲୀପ ମହାନ୍ତିଙ୍କର ସେପରି କୌଣସି ଯୋଗ୍ୟତା ନଥିଲା । ଉଚ୍ଚ ପଦବୀରେ ରହି ଅନେକ ଅର୍ଥ ଉପାର୍ଜନ କରୁଥିଲେ ମଧ୍ୟ ତାଙ୍କର ଉଲ୍ଲେଖନୀୟ ଦାନ କରିବା ପରି କିଛି ସଞ୍ଚୟ ନଥିଲା । ତେଣୁ ତାଙ୍କର ଭୟ ହେଉଥିଲା ଯଦି ମୋଟା ଅଙ୍କ ଆଶାରେ କୁବେର ଦଳେଇ

ତାଙ୍କ ଉପରେ ଆଖି ପକାଇ ଥାଆନ୍ତି ତାହାହେଲେ ସେ ଆତ୍ମ ସମ୍ମାନ ରକ୍ଷା କରିବେ କପରି ! କୁବେର ଦଲେଇ ନିଜେ କଲେଜ ପାଇଁ ଆବଶ୍ୟକ ହୋଇଥିବା ଜମିଯାକ ଦେଇଥିଲେ । କଲେଜ ପାଇଁ ବହୁଭାବରେ ସରକାରୀ ବେସରକାରୀ ସାହାଯ୍ୟ ପାଇବା ପାଇଁ ବ୍ୟବସ୍ଥା କରିଥିଲେ ମଧ୍ୟ । ତେଣୁ ଦଳିପ ମହାନ୍ତିଙ୍କଠାରୁ ଯେ ସେ ମୋଟା ପରିମାଣର ଦାନ ପ୍ରତ୍ୟାଶା କରିନଥିବେ ଏ କଥା ଭାବିବା କରି ଠିକ୍ । ଦଳିପ ମହାନ୍ତି ନଭାବି ନଚିନ୍ତି ନିମନ୍ତ୍ରଣ ରକ୍ଷା କରିଥିବାରୁ ମନେ ମନେ ନିଜକୁ ନିଜର ନିର୍ବୋଧତା ପାଇଁ ତାଡ଼ନା କରୁଥିଲେ ।

ଏହି ସମୟରେ ତାଙ୍କର ଭାଷଣ ଦେବାର ପାଳି ପଡ଼ିଲା ଏବଂ ସେ ନିଜର ବକ୍ତବ୍ୟ ଆରମ୍ଭ କଲେ ଓ ଅଧଘଣ୍ଟାଏ ପରେ ଶେଷ କଲେ । ତାଙ୍କର ଭାଷଣ ପ୍ରାଣବନ୍ତ ହେଲା ନାହିଁ ବୋଲି ତାଙ୍କର ଧାରଣା ହେଲା । ତଥାପି ସେ ଲକ୍ଷ୍ୟକଲେ ଭାଷଣ ଶେଷରେ ବେଶ୍ କରତାଳି ହେଲା ।

ତା ପରେ ସଭାର ସଭାପତି ଉପମୁଖ୍ୟମନ୍ତ୍ରୀ କୁବେର ଦଲେଇ ତାଙ୍କର ଭାଷଣ ଦେବାକୁ ଠିଆ ହେଲେ । ଉଚ୍ଛ୍ୱସିତ କରତାଳିରେ ତାଙ୍କୁ ସ୍ୱାଗତ କରାଗଲା ।

ତା ପରେ ସେ ତାଙ୍କର ଭାଷଣ ଯଥାରୀତି ସମ୍ବୋଧନ ପରେ ଏହିପରି ଆରମ୍ଭ କଲେ—'ଆଜି ଏଠାରେ ଯେଉଁ କଲେଜ ପ୍ରତିଷ୍ଠା ହେଲା ସେଥିପାଇଁ ମୋର ଆନନ୍ଦକୁ ମୁଁ ଭାଷାରେ ପ୍ରକାଶ କରିପାରୁ ନାହିଁ । ମୁଁ ନିଜେ ଅଶିକ୍ଷିତ କହିଲେ ଚଳେ । ତିନିଥର ଚେଷ୍ଟାକରି ମଧ୍ୟ ମୁଁ ମାଟ୍ରିକ ପାଶ୍ କରିପାରି ନଥିଲି । ଛାତ୍ର ଭାବରେ ମୁଁ ଥିଲି ଅଧମ । ଉଚ୍ଚ ଶିକ୍ଷା ପାଇବାପାଇଁ ମୋର ସବୁ ସୁବିଧା ଥିଲା । କିନ୍ତୁ ମୋ ହାତରେ ପାଠ ହେଲାନାହିଁ । ମୁଁ ପାଠ ଛାଡ଼ିଦେଲି । କିନ୍ତୁ ଶିକ୍ଷାର ଯେ ଏକ ବିଶେଷ ମୂଲ୍ୟଅଛି ତାହା ମୁଁ ମର୍ମେ ମର୍ମେ ଅନୁଭବ କରି ଆସିଛି । ବଡ଼ ଦୁଃଖର କଥା, ବିଦ୍ୟାପ୍ରତି ଯତ୍ନଶୀଳ ଅନେକ ମେଧାବୀଛାତ୍ର ଅର୍ଥ ଅଭାବରୁ, ଉଚିତ ସୁଯୋଗ ଅଭାବରୁ ଉଚ୍ଚଶିକ୍ଷା ପାଇବାରୁ ବଞ୍ଚିତ ହେଉଛନ୍ତି । କଥାରେ କହନ୍ତି 'କାନ ଥିଲେ ନୋଳି ନାହିଁ, ନୋଳି ଥିଲେ କାନ ନାହିଁ' । ଅନେକ ମେଧାବୀ ଛାତ୍ର ପଢ଼ିବାକୁ ବହି ପାଉନାହାନ୍ତି, କଲେଜରେ ନାମ ଲେଖାଇବାର ସମ୍ବଳ ବି ଯୋଗାଡ଼ କରି ପାରୁନାହାନ୍ତି । ପାଠପଢ଼ାକୁ ଅଧାରେ ଛାଡ଼ି କେଉଁଠି କିରାଣି ଗିରିକରି କରି ନ୍ୟୂନତର ଲୋକଙ୍କର ବଶମ୍ବଦ ହେଉଛନ୍ତି—ଏ ସବୁର ଉଦାହରଣ ମୁଁ ଭାବୁଛି ଖୋଜିବାକୁ ପଡ଼ିବ ନାହିଁ । ତେଣୁ ଗୋଟିଏ କଲେଜ ପ୍ରତିଷ୍ଠା କରିବାକୁ ସଫଳ ହୋଇ ମୁଁ ଯେ ସ୍ଥାନୀୟ ଶିକ୍ଷାର୍ଥୀ ମାନଙ୍କ ପାଇଁ ସୁଯୋଗର ବ୍ୟବସ୍ଥା କରିଦେଇଛି ତା'ଲାଗି ମୋ ମନେ ମନେ ମୁଁ ଏକ ଆତ୍ମତୃପ୍ତିର ସୁଯୋଗ ପାଉଛି । ମତେ ଲାଗୁଛି ଆଜି ଯେପରି ମୁଁ ଏକ ବଡ଼ ପରୀକ୍ଷାରେ ପାଶ୍ କରି ପାରିଛି । ସତରେ କହିବାକୁ ଗଲେ ମୁଁ ଏକ ବିଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ଯାଉଛି ।

'ମୁଁ ଏଇଠି ମୋ ଛାତ୍ର ଜୀବନର କିଛି କଥା କହିବି । ମନ୍ତ୍ରୀମାନଙ୍କୁ ତ ବହୁତ ସଭାରେ ଭାଷଣ ଦେବାକୁ ହୁଏ । ଏଣୁ ତେଣୁ ଦରକାରୀ ଅଦରକାରୀ, ପୁନରାବୃତ୍ତି ଦୋଷ ଥାଇ ଅନେକ କଥା କହିବାକୁ ପଡ଼େ ସେହି ଭାଷଣ ଭିତରେ । ଆପଣ ମାନେ କିନ୍ତୁ ମନେକରନ୍ତୁ ନାହିଁ ଯେ, ମୁଁ ଏଠାରେ ସଭାପତି ଭାବରେ ସେହିପରି ଗତାନୁଗତିକ ଏଣ୍ଡୁ ତେଣ୍ଡୁ ଗୁଡ଼ାଏ ଗପି ମୋର ଭାଷଣ ପୂର୍ତ୍ତି କରିବାକୁ ଚେଷ୍ଟା କରୁଛି । ମୁଁ ଯାହା କହିବାକୁ ଚାହୁଁଛି, ତାହା ଏକାନ୍ତ ଭାବରେ ନୂଆକଥା-ମୁଁ ତାହା ଆଉ କେଉଁଠାରେ କହିନାହିଁ । ତେଣୁ ଆପଣମାନଙ୍କୁ ଅନୁରୋଧ, ଆପଣମାନେ ଟିକିଏ ଧୈର୍ଯ୍ୟର ସହିତ ମୋର କଥା ଶୁଣନ୍ତୁ ।

'ମୁଁ ଯେତେବେଳେ ଛାତ୍ରଥିଲି, ସେ ପ୍ରାୟ ୩୦ । ୪୦ ବର୍ଷ ତଳର କଥା । ମୋ ବାପାଙ୍କର ମୁଁ ଏକମାତ୍ର ପୁଅ । ଧନୀ ଘରର ପିଲା । ବାପା ଯାର ବିଶାଶହେ ବାଟୀ ଜମିର ମାଲିକ ତାର ପାଠପଢ଼ା ଏକ ବିଳାସ । ମୋ ବୋଉ ମତେ ଚାହାଳୀକୁ ପଠେଇବାକୁ ବି ଚାହୁଁ ନଥିଲା । କିନ୍ତୁ ବାପା ମତେ ଲାଗିପଡ଼ି ଠେଲି ପେଲି ହାଇସ୍କୁଲ ପର୍ଯ୍ୟନ୍ତ ପଠାଇଥିଲେ । ବୋଉ ମତେ ଛାଡ଼ି ସବୁବେଳେ କାନ୍ଦୁଥିଲା । ମୁଁ ପୁଣି ତାକୁ ଛାଡି ହଷ୍ଟେଲରେ ରହିବି, ସବୁ ପିଲାମାନଙ୍କ ପରି ଜଣମାଙ୍ଗୀ ହୋଇ ରହିବି ଏ କଥା ଥିଲା ତା ପକ୍ଷରେ ଅସହନୀୟ । କିନ୍ତୁ ବାପାଙ୍କର ଜିଦ୍‌ପାଖରେ ବୋଉର ସମସ୍ତ ଅନୁଯୋଗ ନିଷ୍ଫଳ ପ୍ରତିପନ୍ନ ହୋଇଥିଲା ।

'ବାପା ମତେ ହଷ୍ଟେଲରେ ଛାଡ଼ିଥିଲେ । କିନ୍ତୁ ହଷ୍ଟେଲରେ ମୋ ପାଇଁ ଅନେକ ବିଶେଷ ବ୍ୟବସ୍ଥାଥିଲା । ସେପରି ବ୍ୟବସ୍ଥା କରିବା ପାଇଁ ଆଜି କାଲି ସିନା ସୁବିଧା ନାହିଁ, କିନ୍ତୁ ସେତେବେଳେ ଥିଲା । ମୁଁ ହଷ୍ଟେଲରେ ସୁପରିନ୍‌ଟେନ୍‌ଡେଣ୍ଟ୍ ରହିବା ଘରେ ରହୁଥିଲି । ମୋ ପାଇଁ ତଥା ସୁପରିନ୍‌ଟେନ୍‌ଡେଣ୍ଟ୍‌ଙ୍କ ପାଇଁ ସ୍ୱତନ୍ତ୍ର ରନ୍ଧାର ବ୍ୟବସ୍ଥା ଥିଲା । ଘରୁ ଆସୁଥିଲା ସବୁଚାଉଳ, ଘିଅ, ମାଛ, ପନିପରିବା । ବାପା ଥିଲେ ଶିକାର ପ୍ରିୟ । ତେଣୁ ମଝିରେ ମଝିରେ ମିରିଗ, ହରିଣ ବା ଠେକୁଆ ମାଂସ ଆସି ପହଁଚ ଯାଉଥିଲା । ମୋର ବିଶେଷ ଯତ୍ନ ନେବା ପାଇଁ ବାପା ସୁପରିନ୍‌ଟେନ୍‌ଡେଣ୍ଟ୍‌ଙ୍କୁ ମାସିକ ୧୫ ଟଙ୍କା ଦେଉଥିଲେ । ତା ଛଡ଼ା ଚାଉଳ, ପନିପରିବା, ପିଠାପଣା, ମାଛ ମାଂସ ସବୁଥିରେ କେବଳ ତାଙ୍କର ନୁହେଁ, ତାଙ୍କର ପରିବାର ବି ଭାଗଥିଲା । ମେସ୍‌ର ପୂଜାରୀ, ଚାକର, ସ୍କୁଲର ପିଅନ୍ ସମସ୍ତେ ଥିଲେ ମୋର ଅନୁଗତ । ସମସ୍ତଙ୍କୁ ବାପା ଅନୁଗ୍ରହୀତ କରିଥିଲେ । ଆଉ ପଢ଼ା ସାଥୀଙ୍କ କଥା କାହିଁକି କହିବି । ଶିକ୍ଷକ ମାନେ ତ ମତେ ସମ୍ମାନ କରୁଥିଲେ, ସେମାନେ ବା ନ କରନ୍ତେ କାହିଁକି ? ମୋର ସଖ୍ୟ ସାହଚର୍ଯ୍ୟ ପାଇବାକୁ ସେମାନେ ଖାଲି ଚାହିଁ ବସିଥିଲେ । ମୋର ସଖ୍ୟ ସାହଚର୍ଯ୍ୟ ମାନେ ହିଁ ସୌଭାଗ୍ୟ ।

ବାପାଙ୍କର ସମସ୍ତ ଯନ୍ତ୍ରିଷ୍ଠାନ ବ୍ୟବସ୍ଥା ଉପରେ ଥିଲା ମୋର ହାତଖର୍ଚ୍ଚ । ବାପା ଦେଉଥିଲେ ୧୦ ଟଙ୍କା ଏବଂ ବୋଉ ଦେଉଥିଲା ବେଳେ ବେଳେ ଦଶ, କେବେ ପନ୍ଦର, କେତେବେଳେ କୋଡ଼ିଏ । ଅର୍ଥାତ୍ ମୋର ପ୍ରାଚୁର୍ଯ୍ୟର ବିଚ୍ଛୁରଣରେ ସମସ୍ତେ ଅଭିଭୂତ ହୋଇ ପଡ଼ୁଥିଲେ ।

ମୋର ଐଶ୍ୱର୍ଯ୍ୟର ସ୍ପର୍ଶ କେବଳ ଦୁଇଜଣଙ୍କୁ ଅଭିଭୂତ କରି ନ ଥିଲା । ସେମାନଙ୍କ ଭିତରୁ ଜଣେ ହେଲେ ଝଡ଼େଇ ପରିହିତ ନିର୍ମଳ ଗାନ୍ଧୀବାଦୀ ପ୍ରଧାନ ଶିକ୍ଷକ ନରହରିବାବୁ । ମତେ ଟିଉସନ୍ କରିବାପାଇଁ ବାପାଙ୍କର ଅନୁରୋଧକୁ ମଧ୍ୟ ସେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଆମ ଘରୁ ଆସୁଥିବା ସରୁଚାଉଳ, ଡ଼ାଲି, ମାଛ, ପନିପରିବା, ପିଠାପଣାରୁ ସେ କଣିକାଏ ଗ୍ରହଣ କରୁନଥିଲେ । ପାଠ ପାଇଁ ମତେ ଦୁଇ ଘଣ୍ଟାର ବେଞ୍ଚରେ ଠିଆ କରେଇ ଦେବାକୁ ଏକ ମାତ୍ର ତାଙ୍କରହିଁ ସାହସ ଥିଲା । ମୁଁ ଏକମାତ୍ର ତାଙ୍କୁ ଭୟ କରୁଥିଲି ।

ଆଉ ଜଣେ ଯେ ମୋର ଐଶ୍ୱର୍ଯ୍ୟ ପାଖରେ ଅବନତ ହୋଇନଥିଲେ, ସେ ହେଉଛନ୍ତି ମୋର ସହପାଠୀ ଦଲିପ ମହାନ୍ତି—ଯେ ଆଜିର ଏଇ ସହରର ପ୍ରଧାନ ପୁରୋଧା । ନରହରିବାବୁ ଥିଲେ ଗାନ୍ଧୀବାଦର ବାହକ, ଆଦର୍ଶବାଦୀ । ତେଣୁ ସେ ଅନ୍ୟର ବିଭବପ୍ରତି ପ୍ରଲୋଭିତ ନହେବା ସମୀଚୀନ । କିନ୍ତୁ ଏଇ ଦଲିପ ମହାନ୍ତି ଯେ କିପରି ନିଜକୁ ଅବିଚଳିତ ରଖି ପାରିଥିଲେ ମୁଁ ଏବେ ବି ବୁଝି ପାରିନାହିଁ । ସେ ଦିନର ଦଲିପ ମହାନ୍ତିଙ୍କୁ ମୁଁ ସ୍ପଷ୍ଟ ମନେରଖିଛି । ତାଙ୍କର ଥିଲା ଦୁଇଖଣ୍ଡ ତଳିତଳୁଣା ଲୁଗା । ଗୋଟିଏ ଶସ୍ତାକନାର ଜାମା, ଖଣ୍ଡିଏ ଗାମୁଛା । ଗୋଟିଏ ବେତ ପେଟରା ଭିତରେ ସେ ତାଙ୍କ ଜିନିଷ ପତ୍ର ରଖୁଥିଲେ । ସେ ବେତ ପେଟେରାରେ ଥିଲା ଗୋଟିଏ ଛୋଟ ଶିଶିରେ କିଛି ଲଗେଇବା ତେଲ, ଗୋଟିଏ କନା ମୁଣିରେ ଚୁଡ଼ା, ଗୋଟିଏ ଛୋଟ ମାଟି ପାତ୍ରରେ ଗୁଡ଼ । ସମସ୍ତେ ଜାଣିଥିଲେ ଦଲିପ ମହାନ୍ତି ଗରିବ ଘରର ପିଲା । ତାଙ୍କର ବାପା ନାହାନ୍ତି । ତାଙ୍କର ମାଆ ତାଙ୍କୁ ବହୁତ କଷ୍ଟକରି ପାଠ ପଢ଼ାଉଥିଲେ । ପାଠପଢ଼ା ଥିଲା ତାଙ୍କର ଏକମାତ୍ର ଧ୍ୟାନ । ତଥାପି ସେ ଥିଲେ ମିଷ୍ଟଭାଷୀ ଓ ମେଳାପୀ । ନିରହଙ୍କାର ଓ ଅତି ସରଳ । ଶ୍ରେଣୀର ଶ୍ରେଷ୍ଠ ଛାତ୍ର ବୋଲି ସେ ଥିଲେ ସମସ୍ତଙ୍କର ପ୍ରିୟ । ମୁଁ ସେଥିପାଇଁ ତାଙ୍କ ସହିତ ବନ୍ଧୁତା କରିବାକୁ ଆଗ୍ରହୀ ଥିଲି । କିନ୍ତୁ ସେ ମୋର କୌଣସି ଦାନ ଗ୍ରହଣ କରୁନଥିଲେ । ଘରୁ ଆସିଥିବା ସାମାନ୍ୟ ପିଠା ଖଣ୍ଡିଏ ବି ମୁଁ ତାଙ୍କୁ ଦେବାପାଇଁ ସମର୍ଥ ହୋଇନାହିଁ । ଆଉ ଅଧିକ କଥା କଣ କହିବି ! ତାଙ୍କ ପ୍ରତି ସେଥିପାଇଁ ମୋର ଏକପ୍ରକାର ସମ୍ମାନ ବୋଧ ଥିଲା କହିଲେ ଚଳେ । ତଥାପି ତାଙ୍କର ଅତ୍ୟଧିକ ନିଷ୍ପୃହତାକୁ ମୁଁ ତାଙ୍କର ଅହଙ୍କାର ବୋଲି ବେଳେ ବେଳେ ଅନୁଭବ କରୁଥିଲି ।

'ଏହି ସମୟରେ ଗୋଟିଏ ଶୋଚନୀୟ ଦୁର୍ଘଟଣା ଘଟିଲା—ବାପା ମୋର ମାସିକିଆ ଖର୍ଚ୍ଚ ପଠାଇଥିଲେ ପଚିଶ ଟଙ୍କା । ପାଞ୍ଚଖଣ୍ଡ କୋଡ଼ିଏଟଙ୍କିଆ ନୋଟ୍ । ସେ ଟଙ୍କା ହଷ୍ଟେଲ ସୁପରିନ୍‌ଟେନ୍‌ଡେଣ୍ଟ୍‌ଙ୍କ ପାଖରେ ରହିବା କଥା । କିନ୍ତୁ ସେଦିନ ସେ ନଥିଲେ । ଟଙ୍କାଟା ମୁଁ ରଖିଥିଲି । ସେଦିନ ରବିବାର ଥିଲା । ଦ୍ୱିପ୍ରହର ସମୟ । ମୁଁ ଓ ଦିଲୀପ ବସି ପଢ଼ୁଥିଲୁ । ଟଙ୍କାଟା ବହି ପାଖରେ ଥିଲା । ମୁଁ ଅଳ୍ପ ସମୟ ପାଇଁ ବାହାରକୁ ଯାଇଥିଲି । ଫେରି ଆସି ପଢ଼ି ବସିଲି । କିନ୍ତୁ ଦିଲୀପ ଚାଲିଗଲେ । କିଛି ସମୟ ପରେ ମୁଁ ଆବିଷ୍କାର କଲି ମୋର ପଚିଶଟଙ୍କା ସ୍ଥାନରେ ଅଛି ପନ୍ଦର ଟଙ୍କା । ଦିଲୀପଙ୍କର କାରସାଦି ମୁଁ ବୁଝିପାରିଲି, ସାଙ୍ଗେ ସାଙ୍ଗେ ତାଙ୍କ ପାଖକୁ ଯାଇ କହିଲି, 'ମୋର ଦଶଟଙ୍କା ଦେଇଦିଅ । ସେ ଆକାଶରୁ ପଡ଼ିବାପରି କହିଲେ, 'ଦଶଟଙ୍କା । ମୁଁ ତ ଜାଣେନା । ତୁମ ଟଙ୍କା ତୁମ ବହି ପାଖରେ ଥିଲା । 'ମୁଁ କହିଲି, 'ଦିଲୀପ, ଆଉ ଛଳନା କରନା । ଟଙ୍କାଟା ଦେଇଦିଅ ।' ତାଙ୍କର ସେଇ ଏକା ଉତ୍ତର, ସେ ନେଇ ନାହାନ୍ତି । ମୁଁ କ୍ଷୁବ୍‌ଧ ହେଲି ତାଙ୍କର ଅସଦାଚରଣ ପାଇଁ । ଏପରି ମେଧାବୀ ଛାତ୍ର ଏପରି ନୀଚ ଘୃଣ୍ୟ କାମ କରିପାରେ ଏହାମୋର କଳ୍ପନାର ବାହାରେ ଥିଲା । ସାଙ୍ଗେ ସାଙ୍ଗେ ଖବରଟା ସାରା ହଷ୍ଟେଲରେ ବ୍ୟାପିଗଲା । ମୋର ଶୁଭେଚ୍ଛୁ ବନ୍ଧୁ ସମସ୍ତେ । ସମସ୍ତେ ମୋ ପ୍ରତି ସହାନୁଭୂତି-ଶୀଳ ହେବା ସଙ୍ଗେ ସଙ୍ଗେ ଦିଲୀପଙ୍କୁ ଭର୍ତ୍ସନା କରିବା ଆରମ୍ଭ କରିଦେଲେ । ସନ୍ଧ୍ୟାବେଳକୁ ସୁପରିନ୍‌ଟେନ୍‌ଡେଣ୍ଟ୍ ଆସିଲେ । ଅଭିଯୋଗଟା ମୋ ଠାରୁ ଶୁଣି ସେ ରାଗରେ ଅଗ୍ନିଶର୍ମା ହୋଇଗଲେ । ତଥାପି ସେ ଦିଲୀପଙ୍କୁ ଡ଼ାକି ଟଙ୍କାଟା ଫେରାଇ ଦେବାକୁ ପରାମର୍ଶ ଦେଲେ । ଭରସା ଦେଲେ, ସେ ତାଙ୍କର ଭୁଲ୍‌କୁ କ୍ଷମା କରିଦେବେ । ଟଙ୍କାଟା ନଦେଲେ କିନ୍ତୁ ଫଳ ଖରାପ ହେବ, ଇତ୍ୟାଦି ଅନେକ କଥା କହିଲେ । ଦିଲୀପଙ୍କର ସେହି ଏକା ଉତ୍ତର, ସେ ଟଙ୍କା ନେଇ ନାହାନ୍ତି । ସୁପରିନ୍‌ଟେନ୍‌ଡେଣ୍ଟ୍‌ଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା । ସେ ଦିଲୀପଙ୍କୁ ପ୍ରଥମେ ହାତରେ ଓ ପରେ ବେତରେ ମାଡ଼ ଚଢ଼େଇଲେ । କିନ୍ତୁ ଅବିଚଳ ଦିଲୀପଙ୍କର ଏକା ଉତ୍ତର, 'ମୁଁ ଟଙ୍କା ନେଇ ନାହିଁ ।'

ସୁପରିନ୍‌ଟେନ୍‌ଡେଣ୍ଟ୍‌ଙ୍କର କ୍ରୋଧର ସୀମା ରହିଲା ନାହିଁ । ଦିଲୀପଙ୍କର ଅପରାଧପାଇଁ ସେ ଯେତିକି ବିବ୍ରତ ନୁହନ୍ତି ମୋ ପାଇଁ ସେ ବେଶୀ ଚିନ୍ତିତ । କଣ କହିବେ ମୋ ବାପା ତାଙ୍କୁ । ମୋ ଟଙ୍କା ଚୋରି ଗଲା । ଏହାଠାରୁ ବଳି ତାଙ୍କର ଆଉ ବଡ଼ ଅପରାଧ କଣ ହୋଇପାରେ । ସେ ଦିଲୀପଙ୍କର ସବୁ ଜିନିଷ ପତ୍ର ତନ୍ନ ତନ୍ନ କରି ସନ୍ଧାନ କଲେ । କିନ୍ତୁ ଟଙ୍କା ମିଳିଲା ନାହିଁ ।

ସେଦିନ ଦିଲ୍ଲୀପ ଯେଉଁ ଦଣ୍ଡ ପାଇଥିଲେ ତାହା ଅତ୍ୟନ୍ତ ନିର୍ମମ । ସମସ୍ତେ ନିଃସନ୍ଦେହ ଥିଲେ ଯେ ଅଭାବ ପୀଡ଼ିତ ଦିଲ୍ଲୀପ ଅର୍ଥ ପ୍ରତି ପ୍ରଲୁବ୍ଧ ହୋଇ ଏହି ଲୁଚାଚୋରି କରି ପକାଇଛନ୍ତି, ଏକ ଦୁର୍ବଳ ମୁହୂର୍ତ୍ତରେ । ମୋର ବନ୍ଧୁମାନେ କହିଲେ, ଚୋରକୁ ଉଚିତ ଦଣ୍ଡ ହୋଇଛି ।

କିନ୍ତୁ ତା ପରଦିନ ସକାଳେ ମୁଁ ଆବିଷ୍କାର କରିଥିଲି ଦିଲ୍ଲୀପ ଥିଲେ ଏକାବେଳକେ ନିର୍ଦ୍ଦୋଷ । ମୁଁ ଯେତେବେଳେ ମନ୍ଦିରେ ବାହାରକୁ ଗଲି, ସେତେବେଳେ ଚନ୍ଦା ରଖିଦେବାକୁ ଗୋଟିଏ ଦଶଟଙ୍କିଆ ନୋଟ ବହି ଭିତରେ ରଖି ଦେଇଥିଲି । କିନ୍ତୁ ସେ କଥା ମୋର ଆଦୌ ମନେ ପଡ଼ି ନଥିଲା । ଅଭାବୀ ଦିଲ୍ଲୀପଙ୍କ ଉପରେ ସନ୍ଦେହ ହେବା ମାତ୍ରେ ମୋ ମନ ଭିତରକୁ ଅନ୍ୟ କୌଣସି ଚିନ୍ତା ଆସିନଥିଲା । ତା ପରଦିନ ବହିଭିତରେ ଟଙ୍କାଟା ଦେଖିବା ମାତ୍ରେ ମୋର ମନେପଡ଼ିଗଲା ଯେ ମୁଁ ନିଜେ ହିଁ ସେ ଟଙ୍କା ସେହି ବହି ଭିତରେ ରଖିଥିଲି । ସତ୍ୟକୁ ଆବିଷ୍କାର କରି ମୁଁ ବିମୂଢ଼ ହୋଇଗଲି । ମୁଁ ନୀରବରେ ଅନୁତାପ କଲି । ଦିଲ୍ଲୀପଙ୍କ ପାଖକୁ ଦୌଡ଼ିଗଲି । ତାଙ୍କ ମୁଣ୍ଡ ଫୁଲିଯାଇଥିଲା ମାଡ଼ରେ । ତାଙ୍କ ଆଖି ଦୁଇଟି ଫୁଲି ଯାଇଥିଲା କାନ୍ଦି କାନ୍ଦି । ମୁଁ ଯାଇଥିଲି କହିବାକୁ ଦିଲ୍ଲୀପ, ତୁମେ ନିର୍ଦ୍ଦୋଷ । ଟଙ୍କାଟା ମିଳିଯାଇଛି, କିନ୍ତୁ ତାଙ୍କର ଅବସ୍ଥା ଦେଖି ମୁଁ କିଛି କହିପାରିଲି ନାହିଁ । ମୋର ସତ୍ ସାହସ ଆଉ ନଥିଲା । ମୁଁ ଚୁପ୍‌ଚାପ୍ ରହିଗଲି । ମନ ବହୁତ ଖରାପ ହୋଇଥିଲା । ତା ପରେ ମୁଁ ଦିଲ୍ଲୀପଙ୍କ ସହିତ ବନ୍ଧୁତା କରିବାକୁ ଚେଷ୍ଟା କରିଛି । କିନ୍ତୁ ଦିଲ୍ଲୀପଙ୍କୁ ଆଉ ପାଇନାହିଁ । ସେହି ଘଟଣା ପରଠାରୁ ସେ ବଦଳି ଯାଇଥିଲେ । କାହା ସହିତ ମିଳାମିଶା କରୁନଥିଲେ । ପାଠ ପଢ଼ିବା ଛଡ଼ା ତାଙ୍କର ଆଉ କୌଣସି କାମ ନଥିଲା ।

ଭାଇ ଓ ଭଉଣୀମାନେ, ଆଜିକୁ ତିରିଶ ବର୍ଷରୁ ଦୀର୍ଘକାଳ ମୁଁ ଦିଲ୍ଲୀପଙ୍କ ପାଖରେ ମନେ ମନେ କ୍ଷମା ମାଗିଛି । କେତେଥର ଭାବିଛି ତାଙ୍କ ପାଖକୁ ଚିଠି ଲେଖି ସତକଥାଟା ଜଣାଇଦେବି । କିନ୍ତୁ ପାରିନାହିଁ । ସେ ସତ୍ ସାହାସ ମୋର ହୋଇନାହିଁ । ଦିଲ୍ଲୀପଙ୍କୁ କଲେଜରେ ପାଠପଢ଼ା ବେଳେ ସାହାଯ୍ୟ କରିବାକୁ ଇଚ୍ଛା ପ୍ରକାଶ କରି ଥରେ ତାଙ୍କ ପାଖକୁ ଚିଠି ଦେଇଥିଲି । ସେ ଅଳ୍ପ କଥାରେ ଧନ୍ୟବାଦ ଜଣାଇ ସାହାଯ୍ୟ ପ୍ରତ୍ୟାଖ୍ୟାନ କରିଥିଲେ ।

ତା ପରେ ସମୟ ଗଡ଼ି ଯାଇଛି ।

ଆମ ଦୁହିଁଙ୍କ ଅବସ୍ଥାରେ ବହୁତ ପରିବର୍ତ୍ତନ ଘଟି ଯାଇଛି । କିନ୍ତୁ ମୁଁ କେବେ ଦିଲ୍ଲୀପଙ୍କୁ ଭୁଲିନାହିଁ । ତାଙ୍କ ଖବର ସବୁ ବେଳେ ରଖିଛି । ସେ ପରୀକ୍ଷାରେ

କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ । ସେ ପଢ଼ିବାକୁ ଜର୍ମାନ୍ ଗଲେ । ସେ ଡ଼କ୍ଟରେଟ୍ ପାଇଲେ । ସେ ତାଙ୍କ କମ୍ପାନୀରେ ଉଚ୍ଚ ପଦାଭିଷିକ୍ତ ହେଲେ । ମୁଁ ସବୁ ଖବର ରଖିଛି । ତାଙ୍କର ଉନ୍ନତିରେ ଖୁବ୍ ଆନନ୍ଦ ଅନୁଭବ କରିଛି । କିନ୍ତୁ ସତ କହୁଛି ଦିଲୀପଙ୍କ ପାଖରେ ସେଦିନ ମୁଁ କରିଥିବା ଅପରାଧ ପାଇଁ ମୋର ହୃଦୟର ଜ୍ୱାଳା ଶାନ୍ତ ହୋଇନାହିଁ ।

ଏହି କଲେଜର ଉଦ୍‌ଘାଟନ ଉତ୍ସବକୁ ମୁଁ ତାଙ୍କୁ ନିମନ୍ତ୍ରଣ କରିଥିଲି, ଭେଟିବାର ଏକ ସୁଯୋଗ ସୃଷ୍ଟି କରିବାକୁ । ମୋର ବହୁତ ଭୟ ଥିଲା, ସେ ମୋର ନିମନ୍ତ୍ରଣ ରକ୍ଷା କରିବେ ନାହିଁ । କିନ୍ତୁ ସେ ଉଦାର ; ଅତୀତ ପାଟରେ ସେ ବନ୍ଧା ପଡ଼ିନାହାନ୍ତି । ସେ ଏଠାକୁ ନିମନ୍ତ୍ରଣ ରକ୍ଷାକରି ଆସିଛନ୍ତି । ଏ ସମସ୍ତର ଅର୍ଥ ସେ ମତେ ଅଯାଚିତ ଭାବରେ କ୍ଷମା ଦେଇଛନ୍ତି । ତଥାପି ମୁଁ ଏହି ସୁଯୋଗରେ ମୋର ସେ ଦିନର ଅକ୍ଷମଣୀୟ ଅପରାଧ ପାଇଁ ଆପଣମାନଙ୍କ ସମ୍ମୁଖରେ ତାଙ୍କଠାରୁ ନତଜାନୁ ହୋଇ କ୍ଷମା ମାଗୁଛି ।'

କୁବେର ଦଲେଇ, 'କ୍ଷମା ମାଗୁଛି, କହିବା ବେଳକୁ ଯାଇ ପହଞ୍ଚି ଯାଇଥିଲେ ସାରାକ୍ଷଣ ମୁଖାବନତ କରି ବସି ରହିଥିବା ଦିଲୀପ ମହାନ୍ତିଙ୍କର ପାଦ ତଳରେ । ଦିଲୀପ ମହାନ୍ତି ହତଭମ୍ବ ହୋଇ ଚଉକିରୁ ଉଠି ପଡ଼ିଲେ ଏବଂ କୁବେର ଦଲେଇଙ୍କୁ ତଳୁ ଉଠାଇ ବୁକୁ ଉପରେ ଧରି ଭୋ ଭୋ ହୋଇ କାନ୍ଦି ଉଠିଲେ । କୁବେର ଦଲେଇ ମଧ୍ୟ ଦିଲୀପ ମହାନ୍ତିଙ୍କୁ ଗ୍ଲୁଢରେ ଭିଡ଼ିଧରି ଭୋ ଭୋ ହୋଇ କାନ୍ଦିଲେ ।

କିଛି ସମୟ ପାଇଁ ସମଗ୍ର ସଭାସ୍ଥଳ ନୀରବ ।

ତାପରେ କଲେଜ ପରିଚାଳନା ସମିତିର ସଭାପତି ତଥା ହାଇସ୍କୁଲର ପ୍ରଧାନ ଶିକ୍ଷକ ଗାନ୍ଧିବାଦୀ ନରହରିବାବୁ ସେ ଦୁହିଁଙ୍କୁ ପରସ୍ପରଠାରୁ ଅଲଗା କରି ଚଉକିରେ ବସେଇ ଦେଲେ । ତଥାପି ସେମାନଙ୍କର କୋହ ଶେଷ ହୋଇ ନଥାଏ ।

ତା ପରେ ନରହରିବାବୁଙ୍କର ଅନ୍ତିମ ଭାଷଣ—'ଏହି ଶିକ୍ଷାନୁଷ୍ଠାନର ଭିତ୍ତିଭୂମି ହେଉଛି ଏହି ଦୁଇବନ୍ଧୁଙ୍କର ହୃଦୟର ମହତ୍ତ୍ୱ,' ସହିତ ସଭା ସାଙ୍ଗ ହେଲା ।

୨୭ । ୧୦ । ୭୫

ଭୁବନେଶ୍ୱର

# ପ୍ରେମ ପର୍ବ

ମାତ୍ର ୪୭ ବର୍ଷ ବୟସରେ ଭୁବନାନନ୍ଦ ବାବୁ ଅନ୍ତିମ ନିଃଶ୍ୱାସ ତ୍ୟାଗ କଲେ । ହୃଦଯନ୍ତ୍ର କ୍ରିୟା ବନ୍ଦ ଜନିତ ଆକସ୍ମିକ ମୃତ୍ୟୁ । ଆତ୍ମୀୟ ସ୍ୱଜନ, ବନ୍ଧୁ ପରିଜନ ସମସ୍ତଙ୍କ ହୃଦୟରେ ଦାରୁଣ ବେଦନା ଦେଇ ସେ ଜୀବନର ରଙ୍ଗମଞ୍ଚରୁ ଅନ୍ତର୍ହିତ ହୋଇଗଲେ । ସବୁଠାରୁ କଠିନତମ ଆଘାତ ଲାଗିଥିଲା ତାଙ୍କ ପତ୍ନୀ ସୁଧାଦେବୀଙ୍କୁ—ଦୀର୍ଘ ୨୦ ବର୍ଷର ସାର୍ଥକ, ପରିପୂର୍ଣ୍ଣ ଦାମ୍ପତ୍ୟ ଜୀବନର ଏ ପ୍ରକାର ଆକସ୍ମିକ ଅବସାନ ପାଇଁ ସେ ଆଦୌ ପ୍ରସ୍ତୁତ ନଥିଲେ । ଦୀର୍ଘ ୨୦ ବର୍ଷର ଦାମ୍ପତ୍ୟ ଜୀବନରେ ଦୁହିଁଙ୍କ ଭିତରେ ଗଭୀର ପ୍ରୀତି, ଅନ୍ତରଙ୍ଗ ବୁଝାମଣା, ପରସ୍ପର ପ୍ରତି ଏକାନ୍ତ ଆନୁଗତ୍ୟ ହିଁ ଫୁଟି ଉଠିଥିଲା । କେବଳ ଅନ୍ୟମାନେ ନୁହଁନ୍ତି, ସେମାନେ ଉଭୟେ ବୁଝି ପାରୁଥିଲେ ଓ ହୃଦୟଙ୍ଗମ କରୁଥିଲେ ଯେ ସେମାନେ ଉଭୟେ ଉଭୟଙ୍କୁ ପରିପୂର୍ଣ୍ଣ କରି ପାରିଛନ୍ତି—ସେମାନେ ସୁଖୀ ଦମ୍ପତି । ଦୁଃଖ ଓ ଆନନ୍ଦ, ଅଭାବ ଓ ପ୍ରାଚୁର୍ଯ୍ୟ, ଐଶ୍ୱର୍ଯ୍ୟ ଓ ବିପର୍ଯ୍ୟୟ ଜୀବନରେ କେତେ କଣ ଆସିଛି । ଉଭୟେ ଏକ ହୃଦୟରେ ସବୁ ଅବସ୍ଥାକୁ ଗ୍ରହଣ କରିଛନ୍ତି । ଏକ ମନରେ ସବୁ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ସେଥିପାଇଁ ପରସ୍ପରଠାରୁ ଭିନ୍ନହୋଇ ରହିବାର କଥା ସେମାନେ କେବେ ଭାବି ପାରନ୍ତି ନାହିଁ । ମାତ୍ର ମହାକାଳର ଶାଣିତ ଅସି ସେମାନଙ୍କୁ ଏକ ଆକସ୍ମିକ ଆଘାତରେ ବିଚ୍ଛିନ୍ନ କରିଦେଲା ।

ସୁଧାଦେବୀ ବହୁତ କାନ୍ଦିଲେ—ବେଦନା ଦଗ୍ଧ ହୃଦୟର ଶୋକୋଚ୍ଛ୍ୱାସରେ ତାଙ୍କର ଅନ୍ତର ଦୀର୍ଣ୍ଣ ହେଲା । ସ୍ୱାମୀହୀନ ପ୍ରତିଟି ମୁହୂର୍ତ୍ତ ତାଙ୍କ ପକ୍ଷରେ ଅସହନୀୟ ବୋଧ ହେଲା । ଜୀବନ ତାଙ୍କୁ ବୋଧ ହେଲା ତୁଚ୍ଛ । ଦିନ ଦିନ ମାସ ମାସ ଧରି ସେ ଅଶ୍ରୁପାତ କଲେ । ଚକ୍ଷୁରୁ ଲୋତକଧାର ନଝରୁ ଥିଲାବେଳେ ବି ସେ ଅନ୍ତର ଭିତରେ କାନ୍ଦୁଥିଲେ ।

ସେହିପରି ସବୁରେ ବର୍ଷାଧିକ କାଳ ଅତିବାହିତ ହୋଇଗଲା । ତାପରେ ସ୍ନିଗ୍ଧାଦେବୀ ଟିକିଏ ଶାନ୍ତ ହେଲେ ।

ସ୍ୱାମୀ ଛାଡ଼ି ଯାଇଥିବା ସବୁ ଜିନିଷ ସ୍ନିଗ୍ଧାଦେବୀ ଅତି ଶ୍ରଦ୍ଧାର ସହିତ ସାଇତି ରଖିଥିଲେ । ପ୍ରତ୍ୟେକଟି ଜିନିଷ ଭିତରେ ସେ ସ୍ୱାମୀଙ୍କର ସ୍ପର୍ଶ ଅନୁଭବ କରୁଥିଲେ । ତାହାସବୁ ଭିତରେ ଯେପରି ସେ ତାଙ୍କର ସାନ୍ନିଧ୍ୟ ପାଉଥିଲେ ।

ଭୁବନାନନ୍ଦବାବୁଙ୍କର ବ୍ୟବହାର ପାଇଁ ଗୋଟିଏ ବଡ଼ ଆଲମାରି ଥିଲା । ତାହା ଭିତରେ ଥିଲା ତାଙ୍କର ନିଜସ୍ୱ ଜିନିଷ – ନାନା ପ୍ରକାର ଦରକାରି ଅଦରକାରି କାଗଜପତ୍ର, କେତେଗୁଡ଼ିଏ ପୁରୁଣା ପତ୍ରପତ୍ରିକା, ବିଭିନ୍ନ ଭାଷାରେ ତାଙ୍କର ପ୍ରିୟ କେତେଗୁଡ଼ିଏ ବହି, ନୂଆ ପୁରୁଣା ଆଲବମ୍, ଫୁଲଦାନି, ଶଙ୍ଖ ମଲମଲ ପଥରରେ ତିଆରି ବୁଦ୍ଧ ମୂର୍ତ୍ତିଠାରୁ ଆରମ୍ଭ କରି ପ୍ଲାଷ୍ଟିକର ନଗ୍ନ ନାରୀ ମୂର୍ତ୍ତି ପ୍ରଭୃତି ଚତୁର୍ବିଧ ଜିନିଷ । ସେ ଆଲମାରିକୁ ତାଙ୍କ ବ୍ୟତୀତ ଅନ୍ୟ କେହି କେବେ ଖୋଲିବା ଦରକାର ପଡ଼େ ନାହିଁ ।

ଭୁବନାନନ୍ଦବାବୁଙ୍କର ମୃତ୍ୟୁର ବର୍ଷାଧିକ କାଳପରେ ଦିନେ ସ୍ନିଗ୍ଧାଦେବୀ ସେହି ଆଲମାରି ଖୋଲିଲେ । ତା ଭିତରେ ଥିବା ସ୍ୱାମୀଙ୍କର ଜିନିଷ ସବୁକୁ ଦେଖିବାକୁ ତାଙ୍କୁ ଭଲ ଲାଗୁଥିଲା, ଛୁଇଁବାକୁ ଭଲ ଲାଗୁଥିଲା, ଯତ୍ନରେ ରଖିବାକୁ ଭଲ ଲାଗୁଥିଲା ।

ଆଲମାରିରୁ ପ୍ରତ୍ୟେକଟି ଜିନିଷ ସେ କାଢ଼ିଲେ । ତାକୁ ପରିଷ୍କାର କରି ପୁଣି ଯଥାସ୍ଥାନରେ ସଜାଇ ରଖିଲେ । ଆଲମାରିର ତଳ ଥାକରେ ଦୁଇଟି ଡ୍ରୟାର । ସେଥିରେ ଗୋଟିକରେ ଚାବି ପଡ଼ିଥିଲା । ସ୍ନିଗ୍ଧାଦେବୀ ଚାବିଖୋଜି ସେ ଡ୍ରୟାର ଖୋଲିଲେ । ଡ୍ରୟାରରେ ପୁରୁଣା ଚିଠିପତ୍ର ସବୁ ଗଦା ହୋଇ ରହିଥିଲା । ସେ ଜାଣନ୍ତି ଭୁବନାନନ୍ଦବାବୁ ତାଙ୍କ ପାଖକୁ ଆସିଥିବା ଚିଠିଗୁଡ଼ିକ ଫିଙ୍ଗି ନଦେଇ ବା ନଷ୍ଟ କରି ନଦେଇ ପାଟରେ ରଖିଥାଆନ୍ତି । ତେଣୁ ଅଦରକାରି ବୋଧ ହେଲେ ମଧ୍ୟ ସ୍ନିଗ୍ଧାଦେବୀ ସେ ପୁରୁଣା ଚିଠି ଗୁଡ଼ିକ ସଜାଇ ରଖିଲେ । ଡ୍ରୟାରର ସବା ତଳେ ଗୋଟିଏ ଲଫାପା ଭିତରେ ଅନେକ ଗୁଡ଼ିଏ ଚିଠି ଥିଲା । ଲଫାପାଟି ଖୋଲି ସେ ଗୋଟିଏ ଚିଠି ବାହାରକରି ପଢ଼ିଲେ । ହଠାତ୍ ଯେପରି ତାଙ୍କ ଦେହରେ ବିଦ୍ୟୁତ୍ ଶକ୍ ଲାଗିଲା ।

ଚିଠିଟିର ଲେଖିକା ଅନୁପମା ।

କିଏ ସେ ଅନୁପମା ?

କିଏ ସେ ଅନୁପମା ଗ୍ରୁପ୍ସାଦେବୀ ଜାଣିନ୍ତି ନାହିଁ । କିନ୍ତୁ ତାଙ୍କର ବୁଝିବାକୁ ବାକୀ ରହିଲା ନାହିଁ ଯେ ସେହି ଅନୁପମା ତାଙ୍କର ସ୍ୱାମୀଙ୍କର ହୃଦୟର ପ୍ରୀତିରେ ଅଧିକାର ପାଇଥିବା ଏକ ପ୍ରଣୟିନୀ ।

ଅତ୍ୟନ୍ତ ଯନ୍ତ୍ରଣା ବୋଧ ହେଉଥିଲେ ମଧ୍ୟ ଗ୍ରୁପ୍ସାଦେବୀ ଚିଠିଟିକୁ ଆମୂଳଚୂଳ ପଢ଼ିଲେ । ଚିଠିଟି ଥିଲା ଏଇପରି—

"ହୃଦୟେଶ୍ୱର,

ତୁମେ ଗ୍ଲଲଯିବା ପରେ ପରେ ଚିଠି ଲେଖୁଛି । ଅନ୍ତର ଭିତରେ କେତେ କଷ୍ଟ ଅନୁଭବ କରୁଛି କିପରି ପ୍ରକାଶ କରିବି ! କେତୋଟି ମୁହୂର୍ତ୍ତ ତଳେ ତୁମେ ମୋ ପାଖରେ ଥିଲ, ମୁଁ ତୁମ ପାଖରେ ଥିଲି । ଅଥଚ ବର୍ତ୍ତମାନ କେତେ ଦୂରକୁ ଗ୍ଲଲ ଗଲଣି । ତୁମକୁ ଗ୍ରୁଡ଼ିବାକୁ ଟିକିଏ ବି ଇଚ୍ଛା ନଥିଲା । ଇଚ୍ଛା ହେଉଥିଲା ସବୁ ଗ୍ରୁଡିଦେଇ, ଲଜ୍ଜା ସଙ୍କୋଚ ଭୁଲି ତୁମ ସହିତ ପଳାଇ ଯିବାକୁ । ବର୍ତ୍ତମାନ ମଧ୍ୟ ଇଚ୍ଛା ହେଉଛି ଘର ଗ୍ରୁଡ଼ି ଧାଇଁ ଯିବାକୁ । ଷ୍ଟେସନ୍‌ରେ ଗାଡ଼ିପାଇଁ ଅପେକ୍ଷା କରିଥିବ । ମୁଁ ଯାଇ ପହଞ୍ଚି ଯିବି । କହିବି ମତେ ତୁମ ସାଙ୍ଗରେ ନିଅ । ତୁମ ବିନା ମୁଁ ବଞ୍ଚି ପାରିବି ନାହିଁ । ତୁମେ କଣ ମତେ ନ ନେଇ ଗ୍ଲଲିଯିବ ?

ପ୍ରିୟତମ, କିପରି ମୋ ମନର ଯନ୍ତ୍ରଣା ତୁମକୁ ବୁଝାଇବି ! କେତେ ଯେ ଅବୁଝା ଭାବନା ମନରେ ଆସି ଜମା ହେଉଛି । ତା ତଳେ ମୁଁ ପେଷି ହୋଇ ଯାଉଛି ମତେ ତୁମେ ରକ୍ଷାକର, ମତେ ତୁମେ ଉଦ୍ଧାର କର, ମତେ ତୁମ ଭିତରକୁ ନେଇଯାଅ । ମୁଁ ତୁମ ଭିତରେ ମିଶିଗଲେ ମିଳାଇଗଲେ ଯାଇ ଶାନ୍ତି ପାଇବି । ତୁମେହିଁ ମୋର ସ୍ୱର୍ଗ, ତୁମେ ହିଁ ମୋର ଦେବତା, ଈଶ୍ୱର ।

ପ୍ରିୟତମ, ସତରେ କଣ ତୁମେ ମତେ ଭଲପାଅ ? ସେଇ ଏକା ପ୍ରଶ୍ନ ସବୁବେଳେ କରୁଚି ବୋଲି ରାଗିବ ନାହିଁ । କେତେଥର କହିଚ, ତୁମେ ମତେ ବହୁତ ବହୁତ ଭଲପାଅ । କିନ୍ତୁ ସେଥିରେ ମୁଁ ସନ୍ତୁଷ୍ଟ ହୋଇ ପାରୁନି । ଇଚ୍ଛା ହେଉଛି, ତୁମ ମୁହଁରୁ ସେଇ ଗୋଟିଏ କଥା ବାରମ୍ବାର ଶୁଣୁଥିବି । ଜୀବନସାରା ଶୁଣୁଥିବି ଏବଂ ସେଇ କଥା ମଧ୍ୟ ମୁଁ ତୁମକୁ ବାରମ୍ବାର କହୁଥିବି ।

ମୁଁ ଜାଣେ ମୁଁ ତୁମର ଯୋଗ୍ୟ ନୁହେଁ । ବାମନ ହୋଇ ଆକାଶର ଚାନ୍ଦକୁ ଧରିବାକୁ ଆଶାକରୁଚି । ତଥାପି ମୁଁ ସେ ଆଶା ଗ୍ରୁଡ଼ି ପାରୁନି । ମୋ ପରି ଶହ ଶହ ଝିଅ ତୁମକୁ ମିଳିବେ । କିନ୍ତୁ ମୋ ଆଖିରେ ମୁଁ ତୁମ ଛଡ଼ା ଆଉ କାହାକୁ ଦେଖି ପାରୁନି । ତୁମ ପାଦତଳେହିଁ ମୋର ପରମ ଆଶ୍ରୟ ।

ତୁମେ କଣ ସତରେ ମୋ ଉପରେ ରାଗିଲ କି ? ତୁମକୁ ମୋର ଅଦେୟ ତ କିଛି ନାହିଁ । ମୁଁ ତ ସବୁ ଦେଇଛି । ତୁମ ଭିତରେ ତ ମୋର ସ୍ୱର୍ଗ । ତୁମ ବାହାରେ କଣ ମୋର ବୋଲି କିଛି ଅଛି ! ମୋର ଇହକାଳ, ପରକାଳ, ମୋର ଦେହ ପ୍ରାଣମନ ହୃଦୟ ସବୁ ତୁମର । ମୁଁ ତୁମ ପାଦତଳେ ସବୁ ସମର୍ପଣ କରି ଦେଇଛି । ମୋର ଆଉ ଦେବାକୁ କିଛି ବାକି ନାହିଁ । ଦେହଟା ସବୁଠାରୁ ଶ୍ରେଷ୍ଠ କଥା । ସେଇ ଦେହଟାକୁ ଛୁଇଁବାକୁ ଦେଲିନାହିଁ ବୋଲି ଭୁଲ ବୁଝିଲ କି ? ସେଇ ଦେହଟା ତୁମର, ଏକମାତ୍ର ତୁମର । ତୁମ ଜିନିଷ ତୁମକୁ ଦେବାରେ କଣ ମୋର ଆପତ୍ତି ଅଛି ? ତୁମ ଜିନିଷକୁ ତୁମେ ଜୋର୍‌କରି ନେଇ ଯିବାର ଅଧିକାର ତ ତୁମର ଅଛି । କିନ୍ତୁ ତୁମକୁ ଏତିକିମାତ୍ର ମାଗୁଛି । ସେଇ ମଧୁମିଳନର ବାସର ରାତିରେ ତୁମର ପୂଜା କରିବାକୁ ଏଇ ଦେହକୁ ମୁଁ ପବିତ୍ର, ସୁନ୍ଦର ଫୁଲପରି ସଜାଇ ରଖିଛି । ମତେ ସେତିକି ସୁଯୋଗ ଦିଅ । ସେହି ପବିତ୍ର ଚିରସ୍ମରଣୀୟ ବାସର ରାତ୍ରିରେ ମୁଁ ସେଇ ଶେଷ ଅର୍ଘ୍ୟଟିକୁ ତୁମ ପାଖରେ ଅର୍ପଣ କରି ତୁମ ଭିତରେ ହଜିଯାଏ ।

ପ୍ରିୟତମ, ତୁମେ ନିଶ୍ଚୟ ଶୀଘ୍ର ଆସିବ । କଲେଜରେ ତ ଅନେକ ଛୁଟି । ଦିନକପାଇଁ ଆସିବ । ମୁଁ ଅଟକାଇବ ନାହିଁ । ତୁମ ପାଠ ପଢ଼ାରେ ମୁଁ ବ୍ୟାଘାତ କରୁଚ ବୋଲି ଭାବବ ନାହିଁ । ତୁମେ ଯଶସ୍ୱୀ ହୁଅବୋଲି ମୁଁ ଏକାନ୍ତ ହୃଦୟରେ ଦେବତାଙ୍କୁ ପ୍ରାର୍ଥନା କରୁଛି । କିନ୍ତୁ ତୁମେ ନ ଆସିଲେ ମୁଁ କିପରି ବଞ୍ଚିବ । ମୁଁ ବହୁତ ହତାଶ ବୋଧକରୁଛି । ନିଶ୍ଚୟ ଆସିବ । ରବିବାର ଦିନ ଆସିବ କି ? ମୁଁ ପଥଚାହିଁ ବସିଥିବ । ମୋର ବହୁତ ବହୁତ ପ୍ରେମ ନିଅ ।

। ଇତି ।

ତୁମର ଏକାନ୍ତ ତୁମର ଅନୁପମା ।

ଚିଠିଟି ପଢ଼ିସାରି ସୁପ୍ରିୟାଦେବୀ ବିମୂଢ଼ ହୋଇଗଲେ । ତାଙ୍କ ହାତରୁ ଚିଠିଟି ଖସି ପଡ଼ିଲା । କିଏ ଏହି ଅନୁପମା ! ତାଙ୍କ ମନଭିତରେ ଭାବନା ଯେପରି ହଠାତ୍ ଗୋଟିଏ ଜାଗାରେ ସ୍ଥିର ହୋଇ ରହିଗଲା । ଏକ ଅବ୍ୟକ୍ତ ଯନ୍ତ୍ରଣା ବ୍ୟତୀତ ସେ ଆଉ କିଛି ଅନୁଭବ କଲେ ନାହିଁ । ସ୍ୱାମୀଙ୍କ ପ୍ରତି ତାଙ୍କର ଧିକ୍‌କାର ଆସିଲା, ଘୃଣା ଆସିଲା । ଯାହାଙ୍କୁ ସେ ଆଜି ପର୍ଯ୍ୟନ୍ତ ଦେବତା ବୋଲି ପୂଜାକରି ଆସିଛନ୍ତି ତାଙ୍କର ଏହି କୁତ୍ସିତ ରୂପ ଆବିଷ୍କାର କରି ସେ ଉଦ୍‌ଭ୍ରାନ୍ତ ହୋଇଉଠିଲେ । କ୍ରୋଧରେ ତାଙ୍କର ମୁଖ ଲାଲ୍ ହୋଇଗଲା ।

ତଥାପି ସେ ଗୋଟିଏ ପରେ ଗୋଟିଏ ସେହି ଲଫାପା ଭିତରେ ଥିବା ୧୮ ଖଣ୍ଡ ଚିଠି ପଢ଼ିଲେ ।

ତାଙ୍କର ଇଚ୍ଛା ହେଲା ସେ ଏଇ ମୁହୂର୍ତ୍ତରେ ତାଙ୍କର ସ୍ୱାମୀଙ୍କ ପାଖରେ ପାଆନ୍ତେ କି ? ତାହାହେଲେ ଅବଶ୍ୟ ସେ କଣ କରନ୍ତେ ଭାବି ପାରିଲେ ନାହିଁ । ଏଇ ଚରିତ୍ରହୀନ, ଲମ୍ପଟ, ହୃଦୟହୀନ ଲୋକଟାକୁ ସ୍ୱାମୀଭାବରେ ଗ୍ରହଣ କରି ସେ ଠକି ଯାଇଛନ୍ତି । ସେ ପ୍ରତାରିତା । ସେ ପ୍ରବଞ୍ଚିତା । ତାଙ୍କ ଜୀବନରେ ଯାହାସବୁ ଶାନ୍ତି ଆନନ୍ଦ ବୋଲି ପ୍ରତୀତ ହୋଇଥିଲା, ତାହା ସବୁ କଲା ନାଗ ହୋଇ ତାଙ୍କୁ ଶୃଙ୍ଖଳାକୁ ଦଂଶନ କରିବାକୁ ଆରମ୍ଭ କରି ଦେଲେ । ଅସହ୍ୟ ଜ୍ୱାଳାରେ ସେ ମୂହ୍ୟମାନ ହୋଇଗଲେ ।

ଶ୍ରେୟା ଦେବୀଙ୍କର ଦୃଢ ବିଶ୍ୱାସ ଥିଲା, ତାଙ୍କ ସ୍ୱାମୀଙ୍କ ଜୀବନରେ ସେ ଥିଲେ ଏକମାତ୍ର ନାରୀ । କିନ୍ତୁ ଅନୁପମାକୁ ଆବିଷ୍କାର କଲା ପରେ ତାଙ୍କର ମନେହେଲାତାଙ୍କ ସ୍ୱାମୀ ଅନୁପମା ପରି ବହୁନାରୀଙ୍କ ସହିତ ସମ୍ପୃକ୍ତ । ତାଙ୍କର ଅଗୋଚରରେ ତାଙ୍କର ସ୍ୱାମୀ ବହୁ ପ୍ରଣୟିନୀଙ୍କ କୋଳରେ ରାତ୍ରି ଯାପନ କରିଛନ୍ତି । ଅଥଚ ସମ୍ମୁଖରେ ନିଷ୍କଳୁଷ, କଳଙ୍କହୀନ, ପତ୍ନୀପରାୟଣ ପୁରୁଷ ଭାବରେ ଅଭିନୟ କରି ତାଙ୍କୁ ସାରାଜୀବନ ପ୍ରତାରଣା କରିଛନ୍ତି । ୨୦ ବର୍ଷର ଦାମ୍ପତ୍ୟ ଜୀବନ ତାସ୍ ଘର ପରି ତାଙ୍କ ଆଖି ଆଗରେ ଭାଙ୍ଗି ପଡ଼ିଲା । ତାଂକର ଇଚ୍ଛାହେଲା ସେ ତାଙ୍କର ପାଖରେ ଥିବା ସବୁ ଜିନିଷକୁ ଭାଙ୍ଗି ରୁଜି ଧ୍ୱଂସ କରି ଦିଅନ୍ତେ । ଚିତ୍କାର କରି ଭୁବନାନନ୍ଦବାବୁଙ୍କୁ ତିରସ୍କାର କରି କହନ୍ତେ, 'ମୁ ତୁମଙ୍କୁ ଘୃଣା କରେ, ମୁଁ ତୁମଙ୍କୁ ଘୃଣାକରେ । ତୁମେ ରାକ୍ଷସ ତୁମେ ପଶୁ ।

ପ୍ରଚଣ୍ଡ କ୍ରୋଧର ଜ୍ୱାଳା ଭିତରେ ବି ଶ୍ରେୟାଦେବୀଙ୍କ ଆଖିରୁ ଆପେ ଆପେ ଲୁହ ଝରିଗଲା । ୨୦ବର୍ଷ କାଳ ମୁଣ୍ଡାଏ ସୁନା ବୋଲି ଅତି ଯତ୍ନରେ ସାଇତି ରଖି, ତାହାକୁ ମୁଣ୍ଡାଏ ପିତ୍ତଳ ବୋଲି ଆବିଷ୍କାର କଲା ପରେ କୃପଣ ବ୍ୟକ୍ତିର ଜୀବନରେ ଆଉ ଗଭୀରତମ ଦୁଃଖ କଣ ହୋଇପାରେ ।

ସ୍ୱାମୀ ଛାଡ଼ି ଯାଇଥିବା ବିରାଟ ଅଟ୍ଟାଳିକା, ବିପୁଳ ବ୍ୟାଙ୍କ୍ ବାଲାନ୍‌ସ, ଯୋଗ୍ୟ ପୁତ୍ର କନ୍ୟା ଯାହାସବୁ ତାଙ୍କର ଅତି ଗର୍ବର କାରଣ ହୋଇଥିଲା, ସେ ସବୁ ତାଙ୍କୁ ତୁଚ୍ଛ ଓ ମୂଲ୍ୟହୀନ ବୋଧ ହେଲା । ଅପରିଚିତା ଅନୁପମା ପ୍ରତି ମଧ୍ୟ ତାଙ୍କର ଦାରୁଣ ଘୃଣା ଓ କ୍ରୋଧ ଜାତ ହେଲା । ଅନୁପମା ବୋଲି କୌଣସି ଝିଅ ବିଷୟରେ ସ୍ୱାମୀ କେବେ କିଛି କହିଥିବା ତାଙ୍କର ମନେ ପଡ଼ିଲା ନାହିଁ ।

କିଛି ସମୟ ଏକାକୀ ବସି ଅଶ୍ରୁପାତ କରିବାପରେ ସୁମିତ୍ରାଦେବୀ ପୁଣି ସେହି ଚିଠି ଗଦା ଘାଣ୍ଟିବାକୁ ଲାଗିଲେ । ଏଥର ହୃଦେଶ୍ୱରୀ ଅନୁପମା ବ୍ୟତୀତ ତାଙ୍କ ସ୍ୱାମୀଙ୍କ ଜୀବନରେ ଆଉ କେହି ନାରୀ ଅଛି କି ନାହିଁ ଜାଣିବା ।

କିଛି ସମୟ ପରେ ସେ ଆଉ ଗୋଟିଏ ଲଫାପା ଭିତରେ ମେଞ୍ଚାଏ ଚିଠିଥିବା ଆବିଷ୍କାର କଲେ । ଏବଂ ସାଙ୍ଗେ ସାଙ୍ଗେ ସେ ଲଫାପାଟିକୁ ଚିରି ଚିଠି ଗୁଡ଼ାକୁ ବାହାର କରି ପକାଇଲେ । ଚିଠି ଗୁଡ଼ିକ ଉପରେ ଆଖି ପଡ଼ିବା ମାତ୍ରେ କିନ୍ତୁ ସେ ଭୟରେ ପାଟିକରି କହି ଉଠିଲେ, 'ହେ ଭଗବାନ' । ସତେ ଯେପରି ତାଙ୍କ ମୁଣ୍ଡ ଉପରେ କିଏ ଏକ ଦାରୁଣ ଆଘାତ ଦେଲା ।

କିଛି ସମୟ ଚିଠି ଗୁଡ଼ିକ ସେଇପରି ହାତରେ ଧରି ସେ ଆଖିବୁଜି ବିମୂଢ଼ ହୋଇ ବସି ରହିଲେ । ତାଙ୍କ ହୃଦୟ ଭିତରଟା ଏକ ଅଜଣା ଭୟରେ ଥରୁଥିଲା ।

ପ୍ରାୟ ଅଧଘଣ୍ଟାଏ ପରେ ସେ ପ୍ରକୃତିସ୍ଥ ହେଲେ ଏବଂ ମନରେ ଶକ୍ତି ସଂଚୟ କରି ସେ ଧରିଥିବା ଚିଠିରୁ ଗୋଟିଏ ଖୋଲିଲେ । ଚିଠିଟି ତାଙ୍କ ସ୍ୱାମୀଙ୍କ ପାଖକୁ ଲେଖା—

ମହାଶୟ,

ଜଣେ ଅପରିଚିତ ବ୍ୟକ୍ତିଠାରୁ ଆପଣ ଏ ଚିଠିଟି ପାଇ ନିଶ୍ଚୟ ବିସ୍ମିତ ହେବେ । ଚିଠିଟା ଲେଖିବା ନିହାତି ଉଚିତ୍ ମନେହେଲା, ତେଣୁ ଲେଖୁଛି । ଏ ଚିଠି ସହିତ ଥିବା ଚିଠିଗୁଡ଼ିକ ଆପଣଙ୍କୁ ନୂତନ ଆଲୋକ ଦେଇପାରେ ବୋଲି ଭାବୁଛି । । ଇତି ।"

ଚିଠି ଶେଷରେ ପ୍ରେରକର ନାମ ନଥିଲା ।

ଚିଠିର ତାରିଖରୁ ସୁମିତ୍ରାଦେବୀ ଜାଣିଲେ ତାଙ୍କ ବିବାହର ଅଳ୍ପ କେତେଦିନ ଆଗରୁ ଭୁବନାନନ୍ଦବାବୁ ସେ ଚିଠି ପାଇଥିଲେ ।

ସେହି ଗୋଟିଏ ଚିଠିଟି ସହିତ ଅନେକ ଗୁଡ଼ିଏ ଚିଠି ଥିଲା । ସେ ଚିଠିଗୁଡ଼ିକ ପଢ଼ିବା ସୁମିତ୍ରାଦେବୀଙ୍କର ଆବଶ୍ୟକ ହେଲାନାହିଁ । ସେ ଚିଠିର ଭାଷା, ସେ ଭାଷାରେ ମୂର୍ତ୍ତି ହୋଇଥିବା ଭାବ ସବୁ ସେ ଗୋଟି ଗୋଟି କରି ଜାଣିଥିଲେ । କାରଣ ସେ ଚିଠି ସବୁ ଥିଲା ତାଙ୍କର ହାତଲେଖା ।

ଚିଠିଗୁଡ଼ିକ ସେ ଗୋଟି ଗୋଟି କରି ଦେଖି ନେଲେ ଏକ ବିଶେଷ ଚିଠିର ସନ୍ଧାନ କରିବାକୁ । ସେ ବିଶେଷ ଚିଠିଟି ବି ତା ଭିତରେ ଥିଲା । ସେଇଟିକୁ ସେ ଖୋଲି ଥରେ ଆଖି ପକେଇ ଦେଲେ । ସେ ଚିଠିରେ ସେ ଯାହା-ଲେଖିଥିଲେ ଦୀର୍ଘ ୨୦ ବର୍ଷ ପରେ ମଧ୍ୟ ତାଙ୍କର ସ୍ମୃତିରେ ତାହା ଜାଜ୍ୱଲ୍ୟମାନ ରହିଥିଲା । ଚିଠିର ଏକ ଅଂଶ ଉପରେ ତାଙ୍କ ଆଖି ପଡ଼ିଲା—"ମତେ ନିଅ, ମତେ ଗ୍ରହଣକର । ମୋର ଏ ଦେହକୁ ତୁମ ଦେହ ଭିତରେ ମିଶାଇ ଦିଅ । ମତେ ତୁମ ଭିତରେ ବିଲୀନ କରିଦିଅ । ମତେ ତୃପ୍ତକର, ଶାନ୍ତକର—" ଗ୍ରୁସ୍ମା-ଦେବୀଙ୍କର ଆଖି ବନ୍ଦ ହୋଇଗଲା । ସେ ଆଉ ପଢ଼ିପାରିଲେ ନାହିଁ । ଚିଠି ଗୁଡ଼ାକ ଆଗକୁ ଠେଲି ଦେଇ ସେ ଅଖିବୁଜି ଅନେକ ସମୟ ବସିଲେ । ତା ପରେ ଧୀରେ-ଧୀରେ ଉଠି ଡ୍ରୟାର ଭିତରେ ଥିବା ସବୁ ଚିଠିକୁ ଏକାଠି କରି ସେଥିରେ ଗୋଟିଏ ଜଳନ୍ତା ଦିଆସିଲି କାଠି ସଂଯୋଗ କରିଦେଲେ ।

କେତୋଟି ମୁହୂର୍ତ୍ତ ପରେ ଘର ଭିତର ଯାକ କେବଳ ପୋଡ଼ା କାଗଜ ଉଡ଼ି ବୁଲିଲା । ସେତେବେଳେ ଗ୍ରୁସ୍ମାଦେବୀ ସ୍ୱାମୀଙ୍କ ଫଟୋ ପାଖରେ ମୁଣ୍ଡ ଲଗାଇ କାନ୍ଦୁଥିଲେ ।

୫ । ୨ । ୭୬

ଭୁବନେଶ୍ୱର



# ନୀଳାମ୍ବର ଓ ପୀତାମ୍ବର ଉପାଖ୍ୟାନ

ନିପଟ ମଫସଲ ଗାଁ ।

ପାଖରେ ଥିବା ଛୋଟ ସହର ଓ ସେହି ଗାଁକୁ ଯେଉଁ କଚ୍ଚା ରାସ୍ତା ଯୋଗ କରିଛି, ତାହା ବର୍ଷା ଦିନେ ଏକା ବାରେକେ ଅଗମ୍ୟ ହୋଇପଡ଼େ । କେବଳ ଖରାଦିନେ ସେହି ଧୂଳି ଧୂସରିତ ରାସ୍ତାରେ ସାଇକେଲ, ଶଗଡ଼, ରିକ୍ସା ଯିବା ଆସିବା କରିପାରେ । ଥରେ ଦୁଇଥର ଜିପ୍ ମଧ୍ୟ ସେଇ ରାସ୍ତାରେ ଯାଇଥିବ ।

ସେ ଦିନ କିନ୍ତୁ ସେଇ ଗାଁ ଲୋକଙ୍କୁ ସମ୍ୟକ୍ ଆଚମ୍ବିତ କରି ବହୁ କଷ୍ଟରେ ଧୂଳିରେ ବିବର୍ଣ୍ଣ ହୋଇ ଗୋଟିଏ କାର୍ ସେଠାରେ ପହଞ୍ଚିଲା—ସେତେବେଳେ ସମୟ ମେ ମାସର ବିଦଗ୍ଧ ମଧ୍ୟାହ୍ନ ।

ନୀଳାମ୍ବର ମହାନ୍ତି ଘର ଭିତରେ ଦେହରେ ଓଦା ଗାମୁଛା ପକାଇ ଗୋଟିଏ ସପ ମସିଣା ଉପରେ ଗଡ଼ପଡ଼ ହେଉଥିଲେ ଏବଂ ହାତରେ ଧରିଥିବା ବିଞ୍ଚଣା ହଲାଇ ପବନ ପାଇବା ସଙ୍ଗେ ସଙ୍ଗେ ମାଛିମାନଙ୍କ ଦୌରାତ୍ମ୍ୟରୁ ନିଜକୁ ରକ୍ଷା କରିବାକୁ ଚେଷ୍ଟା କରୁଥିଲେ । ଅବିଲମ୍ବେ ତାଙ୍କ ପାଖରେ ଖବର ପହଞ୍ଚିଗଲା । ତାଙ୍କରି ଘର ସମ୍ମୁଖରେ ହିଁ କାର୍ ଅଟକିଥିଲା । ନୀଳାମ୍ବର ସାଙ୍ଗେ ସାଙ୍ଗେ ଯେଉଁ ଅବସ୍ଥାରେ ଥିଲେ ସେହି ଅବସ୍ଥାରେହିଁ ବାହାରକୁ ବାହାରି ଆସିଲେ ।

ସେତେବେଳକୁ କାର୍‌ରୁ ଓହ୍ଲାଇ ସାରି ପୀତାମ୍ବର ପଟ୍ଟନାୟକ ଓ ତାଙ୍କର ସହଧର୍ମିଣୀ ନୀଳାମ୍ବରଙ୍କ ଉଚ୍ଚ ପିଣ୍ଡାର ପାହାଚ ଚଢୁଥିଲେ । ସେମାନଙ୍କୁ ଦେଖି ନୀଳାମ୍ବର ବିସ୍ମୟ ବିମୂଢ଼ ହୋଇ କହି ଉଠିଲେ, 'ଆରେ ପୀତାମ୍ବର ବାବୁ, ଆପଣ—?'

ପୀତାମ୍ବର ନୀଳାମ୍ବରଙ୍କୁ ଦୁଇହାତରେ କୁଣ୍ଢେଇ ପକେଇ କହିଲେ, ଆସିଗଲରେ ନୀଳାମ୍ବର, ତୋର ପାଟିକୁ ଆସିଗଲି ।'

ନୀଳାମ୍ବର ପୀତାମ୍ବରଙ୍କୁ ଘର ଭିତରକୁ ପାଛୋଟି ନେଲେ । ନିଃସଙ୍କୋଚରେ ପୀତାମ୍ବରଙ୍କ ସହଧର୍ମିଣୀ ନୀଳିମା ନିଜର ବହୁମୂଲ୍ୟ ଶାଢୀର ମର୍ଯ୍ୟାଦା ଭୁଲିଯାଇ ନୀଳାମ୍ବରଙ୍କ ସହଧର୍ମିଣୀ ସୁଚରିତାଙ୍କ ପାଖରେ ଭୂମିରେହିଁ ବସି ପଡ଼ିଲେ । ସୁଚରିତା ସେମାନଙ୍କ ପାଇଁ ଚା ପ୍ରସ୍ତୁତ କଲାବେଳେ ଅପରିଚ୍ଛନ୍ନ, ପ୍ରାୟାନ୍ଧକାର ରନ୍ଧାଘର ଭିତରେ ବସି ନୀଳିମା ସାହାଯ୍ୟ କରିବାକୁ ଉଦ୍ୟତ ହେଲେ ।

ସେତେବେଳେ ଅନ୍ୟ ଗୃହରେ ପୀତାମ୍ବର କହି ଚାଲିଥିଲେ—'ତୋର ସେ ପିଲାଦିନର କଥା ସବୁ ମନେ ଅଛି ନା ନୀଳାମ୍ବର ? ସେ ପୁରୀ କଲେଜ ଆଉ ଦରିଆତୋଟା । ସମୁଦ୍ରକୂଳର ଝାଉଁବଣ ଆଉ ବାଇଶି ପାହାଚ—ସରକାରୀ କଳ ଭିତରେ ରହି ଜୀବନଟା ଗୋଟାଏ ଅଜବ୍ କଳ ହୋଇଗଲାଣି । ଆଜି ତୋ ପାଖରେ ରହି ନିଜକୁ ଫେରି ପାଇବା ପରି ଲାଗୁଚି ।'

ପୀତାମ୍ବରଙ୍କ କଥାବାର୍ତ୍ତା ଓ ବ୍ୟବହାରରେ ଗଭୀର ହୃଦ୍ୟତା ପ୍ରକାଶ ସତ୍ତ୍ୱେ ନୀଳାମ୍ବର 'ଆପଣ' ରୁ 'ତୁମେ' ପର୍ଯ୍ୟନ୍ତ ମାତ୍ର ଓହ୍ଲାଇ ଆସିଥିଲେ । ପୀତାମ୍ବର ତାଙ୍କୁ ଭର୍ତ୍ସନା କରିବା ଭଙ୍ଗୀରେ କହିଲେ, 'ଆରେ, ତୁମେ, ତୁମେ କଣ ହେଉଚୁ—ମତେ କଣ ନୂଆ ଦେଖିଲୁ ନା ଭୁଲିଗଲୁଣି ।' ନୀଳାମ୍ବର ଲଜ୍ଜିତ ହେଲେ ।

ପୀତାମ୍ବର ପଞ୍ଚତାରକା ସିନିୟର ଆଇ, ଏ, ଏସ୍ ଅଫିସର । କେନ୍ଦ୍ର ସରକାରଙ୍କର ଏକ ପ୍ରଧାନ ମନ୍ତ୍ରାଳୟର ସେକ୍ରେଟାରୀ । ଆଉ ନୀଳାମ୍ବର ତାଙ୍କ ଗାଁ ପାଖରେ ଥିବା ଛୋଟ ସହରର ପୁରୁଣା ହାଇସ୍କୁଲର ଜଣେ, ସହକାରୀ ଶିକ୍ଷକ ମାତ୍ର ।

ପୀତାମ୍ବର ଅନର୍ଗଳ କହି ଚାଲିଥିଲେ । 'ବୁଝିଲ ନୀଳିମା, ଆମର ଇଂରାଜୀ ଅଧ୍ୟାପକ ରବି ମହାନ୍ତି ଆମ ଦୁହିଁଙ୍କର ମାଣିକ ଯୋଡ଼ିକୁ ଲକ୍ଷ୍ୟକରି ଥରେ କହିଲେ, 'ହଇହୋ, ଦିଗମ୍ବର, ଶ୍ୱେତାମ୍ବରଙ୍କ ପରି ତୁମେ ଦୁହେଁ କଣ କେଉଁ ଧର୍ମର ଦୁଇ ସମ୍ପ୍ରଦାୟ ନା କଣ ?' ସେତେବେଳେ ଆମ ଦୁହିଁଙ୍କର ବନ୍ଧୁତା ସାରା କଲେଜରେ ଚହଳ ପକେଇ ଦେଇଥାଏ । ଯେଉଁଠି ଦେଖିବ ଆମେ ଦୁଇଜଣ । ଏକାଠି ଥାଉ, ଏକାଠି ଖାଉ, ଏକାଠି ଶୋଉ, ଏକାଠି ପଢ଼ୁ, ଏକାଠି ବୁଲୁ । ଦୁଇଜଣଙ୍କର

ଦୁଇଟା ଦେହ କିନ୍ତୁ ଗୋଟାଏ ମନ, ଗୋଟାଏ ପ୍ରାଣ । ଆମ ବନ୍ଧୁତାକୁ ଅକ୍ଷୁଣ୍ଣ ରଖିବାକୁ ଆମେ ସେତକ ବେଳୁହିଁ ଠିକ୍ କରିଥିଲୁ । ତା ଝିଅ ସହିତ ମୋ ପୁଅ, ନହେଲେ ମୋ ଝିଅ ସହିତ ତା ପୁଅକୁ ବିବାହ ଦେଇ ଆମେ ସମ୍ବନ୍ଧୀ ହେବୁ । ବୁଢା ବୟସରେ ସେହି ସୂତ୍ରରେ ଦୁହେଁ ଯୁଆଡ଼େ ଥାଉ ପଛେ ପୁଣି ଯେପରି ଏକାଠି ହେବୁ ।"

ସୁଯୋଗ ବୁଝି ନୀଳିମା ପ୍ରସ୍ତାବ ପେଶ୍ କଲେ । 'ଏବେ ତ ସେଇ ସୁଯୋଗ ଆସିଲା । ତୁମ ଦୁହିଁଙ୍କର ସ୍ୱପ୍ନ ସଫଳ ହେଉ ।'

ପୀତାମ୍ବର ପୁଅ କଲେଜରେ ବି,ଏ, ପଢ଼ା ଶେଷକରି ଏମ୍,ଏ, ପଢ଼ିବାକୁ ରେଭେନ୍ସାକୁ ଗଲେ । ଆଉ ନୀଳାମ୍ବର ପଢ଼ିଲେ ଟ୍ରେନିଂ । କଟକରେ ଉଭୟେ ଥିବା ବେଳେ ଧୀରେ ଧୀରେ ଉଭୟଙ୍କ ଭିତରେ ବ୍ୟବଧାନ ଗଢ଼ି ଉଠିଥିଲା ପରିସ୍ଥିତି ଯୋଗୁ । ନୀଳାମ୍ବର ଗାଁ ପାଖ ସ୍କୁଲରେ ଚାକିରି ପାଇବା ପରେ ପତ୍ର ମାଧ୍ୟମରେ ମଧ୍ୟ କିଛିଦିନ ସମ୍ପର୍କ ରହିଥିଲା ।

ପୀତାମ୍ବର କହିଲେ, "ମୁଁ କଣ ଭାବିଥିଲି ଜାଣିଲ ସମ୍ବନ୍ଧୁଣୀ—ଏକାଥରକେ ମିଲିକୁ ସାଙ୍ଗରେ ନେଇ ଆସିଥାନ୍ତି । ଆଉ ତମ ପାଖରେ ଛାଡ଼ିଦେଇ ଯାଇ ଥାଆନ୍ତି । ତୁମ ବୋହୂକୁ ତୁମଙ୍କୁ ଦେଇ ଦେଲାପରେ ମୁଁ ନିଶ୍ଚିନ୍ତ । ତୁମେ ଯେତେବେଳେ ବାହାଘର କରୁଚ କର । ତୁମଠାରୁ ବାହାଘର ନିମନ୍ତ୍ରଣ ପାଇ ଆସି ମୋର ଟେକିଣିକ ଭୋଜି ଖାଇବା କଥା ।"

ନିଜ କଥାର ରସିକତାରେ ମୁଗ୍ଧ ହୋଇ ପୀତାମ୍ବର ହୋ ହୋ ହସି ଉଠିଲେ ।

ଖବର କାଗଜରେ ସୁସମ୍ବାଦଟା ପଢ଼ି ନୀଳାମ୍ବର ଉତ୍ଫୁଲ୍ଲ ହେଲେ । ଆନନ୍ଦରେ ତାଙ୍କର ହୃଦୟ ନାଚଲା ଏବଂ ସତକୁ ସତ ସେ ନାଚିଲେ । ସେହି ଖବରଟା ଯେ ଯାହାକୁ ଦେଖିଲେ ତାକୁ କହିଲେ । ଦିନଦିନ ପରେ ସହକର୍ମୀ ଭଗବତ ବାବୁଙ୍କୁ ଯେତେବେଳେ ସେ ପୁଣି ସେହି ଖବର ଉଚ୍ଛ୍ୱାସର ସହିତ ପଞ୍ଚମଥର ପାଇଁ ପରିବେଷଣ କଲେ, ସେତେବେଳେ ଭଗବତ ବାବୁ ବିରକ୍ତ ଓ ବିଦ୍ରୂପ ମିଶାଇ କହିଲେ, 'ଆପଣଙ୍କ ବନ୍ଧୁ ପୀତାମ୍ବର ପଟ୍ଟନାୟକ ଝିଅ ଆଇ,ଏ,ଏସ୍ ପାଇଲେ, ଆପଣ ତ ପାଇ ନାହାନ୍ତି ! ସେଥିପାଇଁ ଏତେ ଖୁସୀ ହେବାର କଣ ଅଛି ?

ନୀଳାମ୍ବର କହିଲେ, 'ଭଗବତ ବାବୁ, ପୀତାମ୍ବର ଆଇ,ଏ,ଏସ୍ ପାଇବା ଯାହା ମୁଁ ପାଇବା ସେଇଆ । ତା ଆଉ ମୋ ଭିତରେ କଣ କିଛି ପାର୍ଥକ୍ୟ ଅଛି ।" ଆମେ ଦୁହେଁ, ଦୁଇ ଅଙ୍ଗରେ ଏକ ମନ, ଏକ ଆତ୍ମା ।

ଭଗବତ ବାବୁଙ୍କର ବ୍ୟଙ୍ଗଭରା ମୂଚ୍ଛକ ହସ ଦେଖି ନୀଳାମ୍ବର ବ୍ୟଥିତ ହୋଇଥିଲେ, ସେମାନଙ୍କର ସଖ୍ୟର ଗଭୀରତା ମାପିବା ଭଳି ମାର୍ଜିତତା ଭଗବତ ବାବୁଙ୍କର ନାହିଁ ବୋଲି ।

ପୀତାମ୍ବର କହି ଚାଲିଥିଲେ । 'ମିଲି ମୋର ଗୋଟିଏ ବୋଲି ଝିଅ । ଆନ୍ଥ୍ରୋପଲୋଜି ଅନର୍ସ ନେଇ ବି,ଏ ପଢୁଛି । ବଡ ପୁଅ ତ ଡାକ୍ତର, ଆମେରିକାରେ ରହିଗଲା । ସେଇଠି ବି ବାହା ହୋଇ ସାରିଲାଣି ମେମ୍ ସାହେବ । ମଝିଆ ପୁଅ ଆଇ,ଏଫ୍,ଏସ୍ ପାଇ ଲଣ୍ଡନରେ ଅଛି । ସାନପୁଅ ଭାବା ଗବେଷଣା କେନ୍ଦ୍ରରେ ରିସର୍ଚ୍ଚ କରୁଚି । ଆଉ ଗୋଟିଏ ବୋଲି ଏଇ ଝିଅ ମିଲି । ସେ ଆଉ ମୋ ଝିଅ କଣ, ତମ ଝିଅ ବୋଲି ଜାଣ ସମୁଦୁଣୀ ।'

ନୀଳାମ୍ବର ଗଭୀର ଉଚ୍ଛ୍ୱାସଭରା ଗୋଟିଏ ଲମ୍ବା ଚିଠି ଲେଖିଲେ— ପୀତାମ୍ବରର ସିଦ୍ଧି ତାଙ୍କର ସିଦ୍ଧି । ପୀତାମ୍ବରର ଗୌରବ ତାଙ୍କର ଗୌରବ ।

କିନ୍ତୁ ବହୁଦିନ ପ୍ରତୀକ୍ଷା କରିବା ପରେ ମଧ୍ୟ ନୀଳାମ୍ବର ତାଙ୍କ ଚିଠିର କୌଣସି ଉତ୍ତର ପାଇଲେ ନାହିଁ । ଭାବିଲେ ବୋଧହୁଏ ପୀତାମ୍ବର ପାଖରେ ଚିଠି ପହଞ୍ଚିଲା ନାହିଁ । କିନ୍ତୁ ସେତେବେଳକୁ ପୀତାମ୍ବରଙ୍କ ଠିକ୍ ଠିକଣା ପାଇବା ବି ସମ୍ଭବ ହେଲାନାହିଁ । ଏତେ ବଡ ସାର୍ଥକତା ପରେ ନୀଳାମ୍ବରଙ୍କ ଠାରୁ ସାଧାରଣ ସମ୍ବର୍ଦ୍ଧନା ସୂଚକ ଚିଠି ଖଣ୍ଡିଏ ବି ନପାଇ ପୀତାମ୍ବର ଯେ ନିଶ୍ଚୟ କ୍ଷୁଣ୍ଣ ହୋଇଥିବ ଏଇ ଚିନ୍ତାରେ ନୀଳାମ୍ବର ଅନେକ ଦିନ ଧରି ପ୍ରପୀଡ଼ିତ ହେଲେ । କିନ୍ତୁ ନିରୁପାୟ ଭାବରେ ତାଙ୍କୁ ଯେ ଯନ୍ତ୍ରଣା ନୀରବରେ ସହ୍ୟ କରିବାକୁ ପଡିଲା ।

ପୀତାମ୍ବରଙ୍କ କଥାରେ ସହଯୋଗ କରି ନୀଳିମା କହିଲେ, 'ବୁଝିଲ ସମୁଦି, ତୁମ ବନ୍ଧୁଙ୍କର ଅତୀତ ପ୍ରତି ଗୋଟାଏ ବଡ଼ ମୋହ । ସବୁବେଳେ 'ଆମେ ଦୁଇଜଣ ଏମିତି ଥିଲୁ, ସେମିତିଥିଲୁ' ଇତ୍ୟାଦି କେତେ କଣ ଅସରନ୍ତି ଗପ । ମତେ ବେଳେ ବେଳେ ଚିଡ଼ ଲାଗେ । ମୁଁ କହେ, ଆଚ୍ଛା ଗୋଟାଏ ଚାକିରୀ କଲ ଯେ ସବୁବେଳେ ବାହାରେ ବୁଲିଲ । ଦୁଇବନ୍ଧୁଙ୍କର ଦିନେ କାଳେ ଦେଖା ନାହିଁ । କଥା କହୁଚ ଯେପରି ଦୁହିଁଙ୍କ ଭିତରେ କ୍ଷୀର ନୀର ସମ୍ପର୍କ ।' ଆସିଲାବେଳେ ମୁଁ କହିଲି, 'ଏତେ ଆନନ୍ଦରେ ଧାଇଁ ଯାଉଚ ଯେ, ତୁମ ବନ୍ଧୁ ତୁମକୁ ଚିହ୍ନିଲେ ହେଲା ।''

ନୀଳାମ୍ବର ଅନ୍ତର ଭିତରେ ଭାଜି ହେଉଥିଲେ । 'କେବେ ପୀତାମ୍ବରଟା ସହିତ ଦେଖା ହୁଅନ୍ତା କି ? ତାର କୃତିତ୍ୱ ପାଇଁ ସେ ଖୁସୀ ହୋଇ ଗୋଟାଏ

ଚିଠି ଦେଇ ପାରଲେ ନାହିଁ ବୋଲି ପୀତାମ୍ବର ଯଦି ଅଭିଯୋଗ କରେ ତାହେଲେ ତାର କି ପ୍ରକାର ସଦୁତ୍ତର ଦେଇ ଭୁଲ ବୁଝାମଣା ଭାଙ୍ଗିବେ ସେଥିପାଇଁ ସେ ମନେ ମନେ ଫଳାପ ରଚନା କରୁଥିଲେ । ନୀଳାମ୍ବରଙ୍କ ମନରେ ଅନେକ ସମୟରେ ଦୁଃଖ ହେଉଥିଲା । ପିତାମ୍ବର ଅନ୍ତତଃ ତାଙ୍କ ପାଖକୁ ଖଣ୍ଡିଏ ଚିଠି ଦେବା ଉଚିତ ଥିଲା । ସେଇ ଚିଠି ଦେଖାଇ ସେ ଭଗବତ ବାବୁଙ୍କର ଭୁଲ୍ ଧାରଣା ଭାଙ୍ଗି ଦେଇ ପାରଥାନ୍ତେ । ନୀଳାମ୍ବର ଟ୍ରେନିଂ ନେଉଥିବା ବେଳେ ବାହା ହୋଇ ପଡ଼ିଥିଲେ । କାରଣ ତାଙ୍କର ମାତୃସ୍ଥାନ ପରିବାରର ଦାୟିତ୍ୱ ବହନ କରିବା ପାଇଁ ଗୃହିଣୀର ଆବଶ୍ୟକତା ଅପରିହାର୍ଯ୍ୟ ହୋଇ ପଡ଼ିଥିଲା । ତାଙ୍କ ବାହାଘରରେ ବରଯାତ୍ରୀ ହୋଇ ପୀତାମ୍ବର ଆସି ଥିଲେ । ତାଙ୍କ ସ୍ତ୍ରୀଙ୍କୁ ପରିହାସ କରିଥିଲେ । ନୀଳାମ୍ବରଙ୍କର ଦୃଢ଼ ବିଶ୍ୱାସ ଥିଲା ପୀତାମ୍ବର ତାଙ୍କର ବାହାଘରକୁ ନିଶ୍ଚୟ ନୀଳାମ୍ବରଙ୍କୁ ଖୋଜିବେ । କିନ୍ତୁ ପୀତାମ୍ବରଙ୍କର ବିବାହ ସମ୍ବାଦଟା ଖବର କାଗଜରୁ ଜାଣିବାକୁ ମିଳିଥିଲା । ତାଙ୍କୁ ଏବଂ ସେହି ଅବସରରେ ଭଗବତ ବାବୁ ତାଙ୍କୁ ଯେଉଁ ବକ୍ରୋକ୍ତି କରିଥିଲେ ତାହାର ମର୍ମାନ୍ତିକ ପୀଡ଼ା ତାଙ୍କୁ ବହୁତ ଦିନ ପର୍ଯ୍ୟନ୍ତ ଲାଗି ରହିଥିଲା ।

ପୀତାମ୍ବର ନୀଳମାଙ୍କର କଥା ମଝିରେ କଥା କହି ଉଠିଲେ । "ମୁଁ କଣ କହିଥିଲି, ବର୍ତ୍ତମାନ ଦେଖିଲି ତ । ମୁଁ କହିଲି, 'ମୋ ଛାଇ ଦେଖିଲେ ମତେ ନୀଳାମ୍ବର ଚିହ୍ନି ପକାଇବ । ଆମର ବନ୍ଧୁତା ଏ ଭେଜାଲ ଯୁଗର ବନ୍ଧୁତା ନୁହେଁ । ଜଣକ ପାଇଁ ଆଉ ଜଣେ ପ୍ରାଣ ଦେଇପାରେ—ସେହିପରି ବନ୍ଧୁତା ଆମର । ସମୟ ସ୍ପର୍ଶରେ ସେ ବନ୍ଧୁତା ପୁରୁଣା ହୁଏନା କି ଛିନ୍ନ ହୁଏନା । ଆମେ ସେଦିନ ପରସ୍ପରକୁ ସମ୍ମୁଖୀ ଡ଼ାକ ଯେଉଁ ଅଙ୍ଗୀକାର କରିଥିଲୁ, ତାହା ଆଜି ପୂର୍ଣ୍ଣ କରିବାର ଦିନ ଆସିଛି । ମୁଁ ସିନା ସରକାରୀ ଯନ୍ତ୍ର ଭିତରେ ପଶି ଯନ୍ତ୍ର ହୋଇ ଯାଇଛି, କିନ୍ତୁ ନୀଳାମ୍ବର କଥାର ମୂଲ୍ୟ ବୁଝେ ଓ କଥାର ମର୍ଯ୍ୟାଦା ରଖେ । ତା ନ ହୋଇଥିଲେ ସେ ଅଫିସର୍ ନହୋଇ ଆଦର୍ଶ ଶିକ୍ଷକ ହୋଇ ନଥାନ୍ତା ।"

ନୀଳାମ୍ବର ଯେଉଁ ଦିନ ଖବର ପାଇଲେ ଯେ ପୀତାମ୍ବର ତାଙ୍କର ଜିଲ୍ଲାର ଜିଲ୍ଲାପାଳ ହୋଇ ଆସୁଛନ୍ତି ସେ ତାଙ୍କର ହୃଦୟ ଭିତରେ ଏକ ନୂତନ ଉଚ୍ଛାସ ଜାତ ହୋଇଥିଲା । ଏଥରକ ବନ୍ଧୁ ମିଳନର ସୁଯୋଗ ମିଳିବ । ମନଖୋଲି ଭାବ ବିନିମୟ ହେବ । ତାର ସ୍ତ୍ରୀକୁ ଦେଖିବେ । ପ୍ରଥମ ଦେଖା ବୋଲି କଣ ଉପହାର ଦେବେ ଇତ୍ୟାଦି ନାନା ପ୍ରକାର ଚିନ୍ତା ଭାବନା, କଳ୍ପନାରେ ନୀଳାମ୍ବର ଦିନ କାଟିଲେ ଏବଂ ସତକୁ ସତ ଦିନେ ଛୁଟି ନେଇ ସେ ଜିଲ୍ଲାର ସଦର ମହକୁମାରେ ପହଞ୍ଚିଗଲେ ।

"ସମୁଦୁଣୀ, ମିଲର ଫଟୋ ଦେଖିବ ?"—ନୀଳମା ସୁମିତ୍ରାଙ୍କ ଉତ୍ତରକୁ ଅପେକ୍ଷା ନକରି ସ୍ୱାମୀଙ୍କର ପୋର୍ଟଫୋଲିଓ ବ୍ୟାଗ୍ ଭିତରୁ ଗୋଟିଏ ଛୋଟ ଆଲବମ୍ ବାହାର କରି ଆଣିଲେ । ସମଗ୍ର ଆଲବମ୍‌ଟି କେବଳ ମିଲର ବିଭିନ୍ନ ବୟସରେ, ଭିନ୍ନ ଭିନ୍ନ ଭଙ୍ଗୀରେ, ବହୁ ଡିଜାଇନ୍‌ର ପୋଷାକରେ ଉଠିଥିବା ଫଟୋରେ ପୂର୍ଣ୍ଣ ଥିଲା । ନୀଳମା କହି ଚାଲିଥିଲେ, "ଏଇ ଫଟୋଟା ଡେରାଡୁନ୍‌ରେ ଇଏ୍ସ ଉଠେଇ ଥିଲେ । ଏଇଟା ସିମିଲାରେ ବଡ଼ ପୁଅ ଉଠାଇଥିଲା ଇତ୍ୟାଦି ।"

ଜିଲ୍ଲାପାଳଙ୍କର ପ୍ରକାଣ୍ଡ ବଙ୍ଗଳା ଭିତରକୁ ପଶିବା ବେଳେ ନୀଳାମ୍ବରଙ୍କୁ ଟିକିଏ ବି ସଙ୍କୋଚ ଲାଗିଲା ନାହିଁ । ପହରାଦାର ପୋଲିସ୍‌କୁ ସେ ପଚାରିଲେ, "ପୀତାମ୍ବର ଅଛୁ ? ତୁମର ଡି,ଏମ୍ ସାହେବ ହୋ । ଅଛୁ ନା ?" ସିଧା ସିଧା ନୀଳାମ୍ବର ବଙ୍ଗଳାର ପ୍ରଶସ୍ତ ବାରଣ୍ଡା ଉପରକୁ ଉଠିଗଲେ । ବାହାର ବାରଣ୍ଡାରେ ଅନେକ ଗୁଡ଼ିଏ ବେତ ଚଉକି ପଡ଼ିଥିଲା । ସେଠାରେ ଜଣେ ଦୁଇଜଣ ଅପେକ୍ଷା କରିଥିଲେ । ନୀଳାମ୍ବର ସେମାନଙ୍କୁ ପୁଣି ପଚାରିଲା । 'ପୀତାମ୍ବର ଅଛୁ । ଅପେକ୍ଷା-ମାଣ ବ୍ୟକ୍ତିଙ୍କ ଭିତରୁ ଜଣେ ଉତ୍ତର ଦେଲା, 'ଅଛନ୍ତି ।'

"କେଉଁଠି ଅଛୁ ? ମୁଁ ଟିକିଏ ଦେଖା କରିବାକୁ ଚାହେଁ ।" ଡି,ଏମ୍ ସାହେବଙ୍କ କୋଠିର ନିୟମ, ଅଫିସ୍ ସମ୍ବନ୍ଧୀୟ କାମରେ ଆସିଥିବା ବ୍ୟକ୍ତିମାନଙ୍କୁ ପି,ଏଙ୍କ ମାଧ୍ୟମରେ ଦେଖା କରିବାକୁ ହେବ । ତେଣୁ ସେମାନେ ପି,ଏ ଆସିବା ପର୍ଯ୍ୟନ୍ତ ବାହାରେ ଅପେକ୍ଷା କରନ୍ତି । ଆତ୍ମୀୟ ସ୍ୱଜନ ବା କେହି ଅତ୍ୟନ୍ତ ବ୍ୟକ୍ତିଗତ ବ୍ୟାପାରରେ ଆସିଥିଲେ ନିଜେ କଲିଂ ବେଲ୍ ବଜାଇ ଭିତର ସହିତ ସଂଯୋଗ ସ୍ଥାପନ କରିପାରନ୍ତି ।

ଭଦ୍ରବ୍ୟକ୍ତି ନୀଳାମ୍ବରଙ୍କୁ ଡି,ଏମ୍ ସାହେବଙ୍କର ଆତ୍ମୀୟ ସ୍ୱଜନ ମନେକରି କଲିଂ ବେଲ୍ ବଜାଇବାକୁ ନିର୍ଦ୍ଦେଶ ଦେଲେ । କଲିଂ ବେଲ୍ ବାଜିବାର କେତୋଟି ମୁହୂର୍ତ୍ତପରେ ଗୋଟିଏ ଦ୍ୱାର ଖୋଲିଲା ଏବଂ ଭିତରୁ ଚପରାସି ବାହାରି ଆସିଲା ।

"ପୀତାମ୍ବର ଅଛୁ ନାଁ ?"

"ଅଛନ୍ତି, ଆସନ୍ତୁ" କହି ଚପରାସି ନୀଳାମ୍ବରଙ୍କୁ ଘର ଭିତରକୁ ଡ଼ାକି ନେଲା ।

ପୀତାମ୍ବର କହିଲେ "ନୀଳି, ସମୁଦୁଣୀଙ୍କୁ ମିଲର ଆଉ ଆଲ୍‌ବମ୍‌ଟା ଦେଖାଅ । ମିଲର ଫଟୋଗ୍ରାଫି ହେଉଛି ହବି । କେତେ ପ୍ରକାର ଫଟୋ ସେ ଉଠାଇଛି ଦେଖିଲେ ଆଶ୍ଚର୍ଯ୍ୟ ହୋଇଯିବ । ପ୍ରତି ବର୍ଷ ତାର ଦଶବାରଟା

ଆଲବମ୍ ଫଟୋରେ ପୂର୍ଣ୍ଣ ହୋଇ ଯାଉଛି । ଆମ ମିଲିର ଇଚ୍ଛା ସେ ଫିଲମ୍ ଡାଇରେକ୍ଟର ହେବ । ବୁଝିଲୁ ନୀଳାମ୍ବର, ଆଜକାଲି ପୁଅ ଝିଅମାନେ ଚାହାନ୍ତି ଫିଲ୍‌ମ୍‌ରେ ହିରୋ, ହିରୋଇନ୍ ହେବେ । କିନ୍ତୁ ମିଲିର ରୁଚି ଅଲଗା । ସେ ଚାହେଁ ପୃଥିବୀ ପ୍ରସିଦ୍ଧ ଡ଼ାଇରେକ୍ଟର ହେବ ।"

ନୀଳାମ୍ବର ଘର ଭିତରକୁ ପ୍ରବେଶ କଲେ । ବଡ଼ଠ ଡ୍ରଇଂ ରୁମ୍ । ସୁନ୍ଦର ପରିଚ୍ଛନ୍ନ, ସୁସଜ୍ଜିତ ଡ୍ରଇଂ ରୁମରୁ ହିଁ ଡ଼,ଏମ୍ ସାହେବଙ୍କର ଆଭିଜାତ୍ୟର କଳ୍ପନା କରିହୁଏ । ଏତେ ସୁନ୍ଦର ଡ୍ରଇଂ ରୁମ ନୀଳାମ୍ବର ଆଗରୁ କେବେ ଦେଖି ନଥିଲେ । ଚପରାସି ତାଙ୍କୁ ସେଠାରେ ବସିବାକୁ କହି ପଚାରିଲା, "ଆପଣଙ୍କ ନାଁ ?"

ନୀଳାମ୍ବର ପୀତାମ୍ବରର ଐଶ୍ୱର୍ଯ୍ୟ ଓ ସୌଭାଗ୍ୟର ବିଚ୍ଛୁରଣ ଭିତରେ ଅଭିଭୂତ ହୋଇ ପଡ଼ିଥିଲେ । ସେ ସୋଫା ଉପରେ ବସି ପଡ଼ୁ ପଡ଼ୁ କହିଲେ, 'କୁହ ନୀଳାମ୍ବର ଆସିଛି ।'

ଚପରାସୀ ଖବର ନେଇ ଭିତରକୁ ଚାଲିଗଲା ।

ନୀଳମା କହିଲେ, 'ବୁଝିଲ ସମୁଦୁଣୀ, ତୁମ ସମୁଦୀଙ୍କୁ ମୁଁ ଜବରଦସ୍ତ ଧରି ଆଣିଛି । ତାଙ୍କର ତ ଖାଲି କାମ, କାମ, କାମ । ଝିଅ ବାହା ନହେଉ । ମନ୍ତ୍ରୀଙ୍କର ବରାଦ ଆଗ ପୂର୍ଣ୍ଣ ହେବା ଦରକାର । ମୁଁ କହିଲି ନୀଳାମ୍ବର ବାବୁଙ୍କ ସହିତ ଆଗ ଦେଖାକର । ତାଙ୍କ ପୁଅ ଆଇ,ଏ,ଏସ ପାଇଛି । ଖବର ପାଇବାମାତ୍ରେ କେତେ ଜଣ ଯାଇ ପହଞ୍ଚିଯିବେଣି । ତୁମେ ପଛରେ ଗଲାବେଳକୁ ବାହାଘର ସରି ଯାଇଥିବ । ମୋ କଥା ଶୁଣି ସେ ଠୋ ଠୋ ହୋଇ ହସିଲେ । କହିଲେ, 'ନୀଳାମ୍ବର ମତେ ନ ପଚାରି ତାର ପୁଅର ବାହାଘର କରିବ, ମୁଁ ଏ କଥା ଭାବିବ କାହିଁକି ? ଯେଉଁ ଦିନଠାରୁ ତାର ମୋର ସମୁଦୀ ହୋଇଛୁ, ସେହି ଦିନଠାରୁ ତାର ପୁଅ ମୋର ଜୋଇଁ ଏବଂ ମୋର ଝିଅ ତାର ବୋହୂ ହୋଇ ସାରିଛି ।"

ଅଳ୍ପ ସମୟ ଭିତରେ ଚପରାସି ଘର ଭିତରୁ ଫେରି ଆସିଲା । ହାତରେ ଖଣ୍ଡିଏ କାଗଜ । କହିଲା, "ଟିକିଏ ଲେଖି ଦିଅନ୍ତୁ ।" ନୀଳାମ୍ବର କାଗଜଟିକୁ ହାତକୁ ନେଲେ । ଭିଜିଟର୍ ମାନଙ୍କ ପାଇଁ ଉଦ୍ଦିଷ୍ଟ ଛାପା ଫର୍ମ—ତାରିଖ, ପୂର୍ଣ୍ଣନାମ, ଠିକଣା, ଦେଖା କରିବା ଉଦ୍ଦେଶ୍ୟ, ଦସ୍ତଖତ । ନୀଳାମ୍ବର ଫର୍ମଟିକୁ ପୂର୍ଣ୍ଣ କରିଦେଲେ । ଦେଖା କରିବାର ଉଦ୍ଦେଶ୍ୟ ସ୍ଥାନରେ ଲେଖିଲେ, "ଅବିସ୍ମରଣୀୟ ଅତୀତର ପୁନରୁଦ୍ଧାର ।'

ନୀଳମା କହିଲେ, "ଗଲବର୍ଷ ମିଶ୍ରର ବାହାଘର କରିଦେବାକୁ ମୋର ମନଥିଲା । ତାଙ୍କ ସାଙ୍ଗରେ ପଢ଼ୁଥିଲେ ନରହରି ଭୂୟାଁ । ନାଗାଲଣ୍ଡରେ ବର୍ତ୍ତମାନ ଆଇ,ଜି ଅଛନ୍ତି । ତାଙ୍କ ପୁଅ ଗଲବର୍ଷ ଆଇ,ପି,ଏସ୍ ପାଇଲା । ସେ ଭାରି ଲାଗିଥିଲେ । କିନ୍ତୁ ଇଏ ନାହିଁ କରିଦେଲେ । ତାଙ୍କ ମନରେ ତାଙ୍କ ସମୁଧୀଙ୍କ କଥା ଅଛି । ମୁଁ ଜାଣିବି କପରି । ମୋର ବି ମନରେ ଟିକିଏ ଅନିଚ୍ଛା ଥିଲା । ଯାହା ହେଲେ ବି ତ ଭୂୟାଁ । ଆଇ,ପି,ଏସ୍ ପାଇଲେ ବୋଲି କଣ ପଟ୍ଟନାୟକ ନା ମହାନ୍ତି ହୋଇଗଲେ କି ।"

ଅଳ୍ପ ସମୟ ପରେ ପୁଣି ଚପରାସି ଫେରି ଆସିଲା । ନୀଳାମ୍ବରଙ୍କୁ ହାତ ଚକଟି କରି କହିଲା, "ଆଜ୍ଞା, ଆପଣ ବାହାରେ ଅପେକ୍ଷା କରି ଥାଆନ୍ତୁ ।'

ନୀଳାମ୍ବରଙ୍କ ମୁହଁରୁ ପ୍ରଥମେ କଥା ବାହାରିଲା ନାହିଁ । ସେ ଟିକିଏ ଆସ୍ତ ହୋଇ କହିଲେ, "ମୋର ଅଳ୍ପ ଟିକିଏ ଦେଖା ହୋଇଥିଲେ ମୁଁ ଚାଲି ଯାଇଥାନ୍ତି ।"

ଚପରାସି କହିଲା, "ଆପଣ ସେଠାରେ ଅପେକ୍ଷା କରି ଥା'ନ୍ତୁ । ସାହେବ ବାଥ୍‌ରୁମ୍‌କୁ ଯାଇଛନ୍ତି ।

ନୀଳାମ୍ବର ଡ୍ରଇଂରୁମରୁ ବାହାରି ଆସି ବାରଣ୍ଡାରେ ପଡ଼ିଥିବା ବେତ ଚଉକି ଉପରେ ବସିଲେ । ଡ୍ରଇଂ ରୁମର ଦ୍ଵାର ରୁଦ୍ଧ ହୋଇଗଲା ।

ନୀଳାମ୍ବରଙ୍କ ମୁଣ୍ଡ ଭିତରଟା ପଙ୍ଖା ପରି ଖାଲି ଘୂରୁଥିଲା । କିଛି ଚିନ୍ତା ଭାବନା ତାଙ୍କ ମନକୁ ଆସୁନଥିଲା । ସେ ମୂର୍ଚ୍ଛିତ ହେବାପରି ଚଉକିରେ ବସି ରହିଲେ ।

ପୀତାମ୍ବର କହିଲେ "ସଞ୍ଜୀବ ଏବେକ୍ଷଣି ପାଟନାରେ ଅଛି ନା ? ସାଧାରଣ ଅଧ୍ୟାପକ ଚାକିରି କରିବାକୁ ସେ ପାଟନା ଯାଇ ନଥିଲା । ବ୍ରିଲିଆଣ୍ଟ ମୀଲା, ସେ ଚାଲାକ୍ ପିଲା । ଓଡ଼ିଶାରେ ରହି କଣ ଆଇ,ଏ,ଏସ୍ ପାଇଁ ପ୍ରିପେରେସନ୍ କରିହୁଏ । ମୁଁ କେତେ କଷ୍ଟ କରିଛି ଓଡ଼ିଶାରେ ରହି ପ୍ରିପେୟାର କରିବାକୁ ! ମୁଁ ଜାଣେ ସେଥିପାଇଁ ହିଁ ସଞ୍ଜୀବ ପାଟନାରେ ଚାକିରି ନେଇଥିଲା ।"

ନୀଳାମ୍ବର ବାରଣ୍ଡାରେ ଆଖି ବୁଜି ବେତ ଚଉକି ଉପରେ ପଡ଼ି ରହିଥିଲେ । ଏହା ଭିତରେ ଆହୁରି କେତେ ଜଣ ଆସି ସେଠାରେ ମଧ୍ୟ ଅପେକ୍ଷା କରୁଥିଲେ । ପ୍ରାୟ ଅଧ ଘଣ୍ଟାଏ ପରେ ପି.ଏ.ଆସି କହିଲେ, "ସାହେବ ଜରୁରୀ କାମରେ ବର୍ତ୍ତମାନ

ବାହାରକୁ ବାହାରିବେ । ଆଜି ଆଉ ଦେଖା ହୋଇ ପାରିବ ନାହିଁ । ଆପଣ ମାନେ ଯାଆନ୍ତୁ ।" ସମସ୍ତେ ଉଠି ଠିଆ ହେଲେ ।

ନୀଳାମ୍ବର ତଥାପି କହିଲେ, "ମୋର ଅଳ୍ପ ଟିକଏ ଦେଖା ହୋଇଥିଲେ ମୁଁ ଚାଲି ଯାଇଥାନ୍ତି ।"

ପି,ଏ କହିଲେ, "ଆଜି ଆଉ ଦେଖା ହୋଇପାରିବ ନାହିଁ । ସାହେବ ବର୍ତ୍ତମାନ ବାହାରି ଯିବେ ।"

ଇତିମଧ୍ୟରେ ଡ୍ରାଇଭର୍ ଗାଡ଼ି ନେଇ ପୋର୍ଟିକରେ ଅପେକ୍ଷା କରିଥିଲା ।

ନୀଳାମ୍ବର ପାହାଚ ତଳକୁ ଓହ୍ଲାଇଗଲେ ଅନ୍ୟମାନଙ୍କ ପଛରେ । ଏବଂ ତାପରେ କ୍ଷିପ୍ର ପଦକ୍ଷେପରେ ବାହାରକୁ ବାହାରି ଗଲେ ।

"ତୁମେ ତ କରି କିଛି କହୁନା ସମୁଧୀ । ବାହାଘର ଜୁନ୍ ୧୬ ତାରିଖରେ କରିବ ତ ? ମୋ ମତରେ ବାହାଘର ତ ଯେତେବେଳେ ହେଲେ ହେବାକଥା । ଆଗରୁ ହେଲେ ଭଲ । ବିଳମ୍ବ କରିବା କାହିଁକି ?"

ନୀଳାମ୍ବର ଭାବୁଥିଲେ କି ଉତ୍ତର ଦେବେ ? ସେଦିନ ଭାଗବତ ବାବୁଙ୍କୁ ମଧ୍ୟ ସେ କିଛି ଉତ୍ତରଦେଇ ପାରି ନଥିଲେ ।

"ପୀତାମ୍ବର ବାବୁଙ୍କ ସହିତ ଦେଖା ହେଲା ।" ଭାଗବତବାବୁଙ୍କର ଏଇ ସାମାନ୍ୟ ପ୍ରଶ୍ନର ଉତ୍ତର କେତେ କଠିନ ହୋଇ ପଡ଼ିଥିଲା ସେଦିନ ! ଭାଗବତବାବୁ ସବୁଦିନ ପରି ସେ ଦିନ ମଧ୍ୟ ବ୍ୟଙ୍ଗଭରା ମୁରୁକି ହସ ହସିଥିଲେ ।

ନୀଳାମ୍ବର ନୀଳିମାଙ୍କର ପ୍ରଶ୍ନର କି ଉତ୍ତର ଦେବେ, ଠିକ୍ କରି ପାରୁନଥିଲେ ।

ସେ କଣ କହିବେ, "ପୀତାମ୍ବର, ତୁମେ ବାରମାସୀ ପକ୍ଷୀପରି ରଙ୍ଗ ବଦଳାଇ ପାର । ଆଉ ସେଇ ରଙ୍ଗରେ ମନକୁ ମୁଗ୍‌ଧ କରିଦେଇପାର । କିନ୍ତୁ ମୁଁ ତୁମକଥାରେ ଆଜି ଆଉ ଆତ୍ମହରା ହୋଇ ପାରୁନି । କାରଣ ୧୬ବର୍ଷ ତଳର ସେଇ ଦିନଟିର ନିଦାରୁଣ ଅପମାନର ଜ୍ୱାଳା ଏବେ ମଧ୍ୟ ମୋ ଅନ୍ତରକୁ ପ୍ରମଥିତ କରୁଚି । ଏ ବାହାଘର ଅସମ୍ଭବ । ତୁମେ ଫେରିଯାଅ ।"

ସେ କଣ କହିବେ, "ପୀତାମ୍ବର, ମୁଁ ତୁମକୁ ଚିହ୍ନିଲି । ତୁମ ବନ୍ଧୁତା ତଳେ କେବଳ ସ୍ୱାର୍ଥ ରହିଛି । କିନ୍ତୁ ମୋ ବନ୍ଧୁତା ଖାଣ୍ଟି । ମୁଁ ଅଯାଚିତ ଭାବରେ

ସେ ଦିନର ଅପମାନ ପାଇଁ ତୁମଙ୍କୁ କ୍ଷମା ଦେଇଛୁ । ତୁମ ଝିଅ ମିଲି ସହିତ ମୋ ପୁଅ ସଞ୍ଜୀବର ବାହାଘର ହେବ । ମୁଁ ଜାଣେ ତୁମର ଏ ନୂଆ ସମ୍ପର୍କ ମୋ ସହିତ ନୁହେଁ । ମୋ ପୁଅ ସଞ୍ଜୀବ କୁମାର ମହାନ୍ତି, ଆଇ,ଏ,ଏସ୍ ସହିତ ହେବ । ତାହାହିଁ ହେଉ । ମୁଁ ସାମାନ୍ୟତାକୁ ଧରି ରହିବାକୁ ଚାହେଁ ନା ।"

ସେ କଣ କହିବେ, "ପୀତାମ୍ବର, ଆଜିକାଲିର ପୁଅ ଝିଅମାନେ ନିଜପାଇଁ ନିଜେ ପସନ୍ଦ କରୁଛନ୍ତି । ମିଲିକୁ ବୋହୂ କରି ନେବାକୁ ମୋର ଆପତ୍ତି ନାହିଁ । ତଥାପି ମତେ ସଞ୍ଜୀବର ମତାମତ ନେବାକୁ ହେବ ।"

ସେ କଣ କହିବେ, "ପୀତାମ୍ବର, ସଞ୍ଜୀବ ଚିଠି ଲେଖିଛି, ସେ ଆଇ,ଏ,ଏସ୍ ପରୀକ୍ଷା ଦେଇଥିଲା ଗୋଟାଏ ସଉକରେ ତାର ସେଥିରେ ଯୋଗ ଦେବା ଆଦୌ ଇଚ୍ଛା ନୁହେଁ । ସେ ଅଧ୍ୟାପକ ହିଁ ରହିବ । ରିସର୍ଚ୍ଚ କରିବ । ଅଧ୍ୟୟନ ଓ ଅଧ୍ୟାପନାକୁ ହିଁ ସେ ପସନ୍ଦ କରେ । ଅର୍ଥ, କ୍ଷମତା ଓ ପଦମର୍ଯ୍ୟାଦା ପାଇଁ ଆଦର୍ଶଚ୍ୟୁତ ହେବାକୁ ଚାହେଁନା । ସେ ମୋର ପରାମର୍ଶର ପ୍ରତୀକ୍ଷା କରୁଛି । ଏବଂ ମୁଁ ଯଦି ତା ସହିତ ଏକମତ ହୁଏ, ମିଲିର ବାହାଘର ଜଣେ ସାଧାରଣ ଅଧ୍ୟାପକ ସହିତ କରିବାକୁ କଣ ତୁମେ ପ୍ରସ୍ତୁତ ପୀତାମ୍ବର ?"

୮ । ୩ । ୭୬

ଭୁବନେଶ୍ୱର



# କେତୋଟି ଚିଠି

—ମିସ୍ ଶୀଲାଗୁପ୍ତାର ଚିଠି—

ନୂଆଦିଲ୍ଲୀ

ପ୍ରିୟ ଆନନ୍ଦ,

ଆମେମାନେ କାଲି ଘଣ୍ଟା ୯ଟାରେ ଆସି ଏଠାରେ ପହଞ୍ଚିଲୁ । ବିମାନ ଦୁଇଘଣ୍ଟା ବିଳମ୍ବରେ ପହଞ୍ଚିଲା । ମୁଁ ବାବାଙ୍କ ସହିତ ଯାଇ ଭାରତର ବହୁତ ରମଣୀୟ ସ୍ଥାନ ଦେଖିବାର ସୁଯୋଗ ପାଇଛି । କିନ୍ତୁ ଓଡ଼ିଶା ପରି ଏତେ ସୁନ୍ଦର ସ୍ଥାନ ଆଉ କେଉଁଠାରେ ଦେଖିନାହିଁ । ସେଠାରେ ଦିନଗୁଡ଼ିକ ଏପରି ଆନନ୍ଦରେ କଟିଗଲା ଯେ ମତେ ତାହା ବର୍ତ୍ତମାନ ସ୍ୱପ୍ନପରି ପ୍ରତୀତ ହେଉଛି । ସେହି ଦିନ-ଗୁଡ଼ିକର ସ୍ମୃତି ମୋ ଅନ୍ତର ଭିତରେ ଚିରକାଳ ଖୋଦିତ ହୋଇ ରହିବ । ମୁଁ ସ୍ୱୀକାର କରିବାକୁ କୁଣ୍ଠିତ ନୁହେଁ ଯେ ଆମର ଏଇ ଯାତ୍ରାର ସଫଳତା ତଳେ ଆପଣଙ୍କର ସାହାଯ୍ୟ ଓ ଯତ୍ନ ହିଁ ରହିଛି । ମା ବି ମୋ ସହିତ ଏକମତ । ଆପଣଙ୍କୁ ସେଥିପାଇଁ ଆନ୍ତରିକ କୃତଜ୍ଞତା ଜଣାଉଛି ଏବଂ ଆପଣଙ୍କୁ ବହୁତ ହଇରାଣ କରି-ଥିବାରୁ କ୍ଷମା ମାଗୁଛି ।

ଆଶାକରେ ଚିଠି ଦେବେ । ।ଇତି।

ଶୀଲା

—ଅଗସ୍ତିର ଚିଠି—

ଭୁବନେଶ୍ୱର

ମିସ୍ ଶୀଲା,

ପ୍ରଥମରୁ ଏହି ଚିଠି ଲେଖିବାର ଧୃଷ୍ଟତା ପାଇଁ କ୍ଷମା ମାଗି ରଖୁଛି ।

ଆଶା କରୁଛି, ଆପଣମାନେ ଯାଇ ଖୁବ୍ ଭଲରେ ପହଞ୍ଚିଥିବେ ।

ମୁଁ ଏଇ ଚିଠି ଲେଖିବାର ପ୍ରଧାନ ଉଦ୍ଦେଶ୍ୟ ହେଲା ଆପଣମାନଙ୍କ ପ୍ରତି ମୋର ଗଭୀର ସମ୍ମାନ ନିବେଦନ କରିବା । ମୁଁ ମୁକ୍ତ କଣ୍ଠରେ କହିବି, ମିଃ ଗୁପ୍ତାଙ୍କ ପରି ଜଣେ ମାନବ ପ୍ରେମୀ, ନିରହଙ୍କାର, ଅମାୟିକ ଅଥଚ ଦୃଢ଼ ଅଫିସର୍ ଆମ ବ୍ୟାଙ୍କ୍‌ରେ କାହିଁକି ସାରା ଭାରତରେ ଥିବେ କି ନାହିଁ । ମିସେସ୍ ଗୁପ୍ତା ମଧ୍ୟ ଜଣେ ଅତୁଳନୀୟା ମହିଳା । ଅଳ୍ପ କେତୋଟି ମୁହୂର୍ତ୍ତ ଭିତରେ ସେ ଆମମାନଙ୍କୁ ଏପରି ଭାବରେ ଆପଣାର କରିନେଲେ ଯେ ମନଭିତରେ ଥିବା ସବୁ ସଂକୋଚ ସକାଳର ମେଘପରି କୁଆଡ଼େ ଉଭେଇଗଲା । ସେ ତ, ସାକ୍ଷାତ ମାତୃମୂର୍ତ୍ତି, ସାକ୍ଷାତ ଦେବୀ । ଆଉ ଆପଣ ! ଆପଣଙ୍କ ବିଷୟରେ ମୋର ବକ୍ତବ୍ୟକୁ ପ୍ରକାଶ କରିବାକୁ ଭାଷା ନାହିଁ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ମୁଁ ଛାତ୍ର । ସେଠାରେ ବହୁଗୁଣୀଙ୍କର ଝିଅମାନଙ୍କ ସହିତ ମୁଁ ମିଳାମିଶା କରିବାର ସୁଯୋଗ ପାଇଛି । ସେମାନଙ୍କୁ ପ୍ରତ୍ୟକ୍ଷ ଭାବରେ ଜାଣିଛି । କିନ୍ତୁ ଆପଣଙ୍କ ସହିତ ତୁଳନୀୟ ଗୋଟିଏ ଝିଅକୁ କେବେ ଦେଖିନାହିଁ । ଅଳ୍ପ କଥାରେ କହିଲେ, ଆପଣ ଅତୁଳନୀୟା, ଆପଣ ଅନିର୍ବଚନୀୟା । ଆପଣଙ୍କ ସହିତ ପରିଚୟ ମୋ' ଜୀବନର ପରମ ସୌଭାଗ୍ୟ ।

ପୁଣି ଥରେ ମୋର ଧୃଷ୍ଟତା ପାଇଁ କ୍ଷମା ମାଗୁଛି ।

ବାବା ମାଙ୍କୁ ମୋର ପ୍ରଣାମ ଜଣାଇବେ । ଆପଣ ମୋର ଅଶେଷ ଶୁଭେଚ୍ଛା ଗ୍ରହଣ କରିବେ ।

ପ୍ରତ୍ୟୁତ୍ତର ପାଇଁ ଅପେକ୍ଷା କରିବା କଣ ମୋର ଅନ୍ୟତମ ଧୃଷ୍ଟତା ହେବ କି ?

॥ ଇତି ॥

ଅଗସ୍ତି

—ଆନନ୍ଦ କୁମାରର ଚିଠି—

ଭୁବନେଶ୍ୱର

ସ୍ନେହର ଅର୍ଚ୍ଚନା,

ତୁମ ଚିଠି ପାଇବାର ୪ ଦିନ ହେଲା । ଉତ୍ତର ଦେଇ ପାରିନାହିଁ । ଉତ୍ତର ଦେବାକୁ ସମୟ ନଥିଲା । ତୁମେ ତ ବିଶ୍ୱାସ କରିବ ନାହିଁ । ଅଫିସ୍ କାମରେ ବ୍ୟସ୍ତ ଥିଲି କହି ମୁଁ ତୁମକୁ ଠକୁଚି ବୋଲି ତୁମର ଧାରଣା । ଏଥର ବ୍ୟସ୍ତତାର କାରଣ ଠିକ୍ ଅଫିସ୍ କାମ ନୁହେଁ । ଏକ ଭିନ୍ନ କାମ । ଗଲା ଚିଠିରେ ଲେଖିଥିଲି ଆମ ହେଡ୍ ଅଫିସ୍ ଦିଲ୍ଲୀରୁ ଆମର ମ୍ୟାନେଜିଂ ଡିରେକ୍ଟର ଆସିବାର ଥିଲା । ତାଙ୍କର ଆଗମନ ଉପଲକ୍ଷେହିଁ ମୋର ଅବସରବିହୀନ ବ୍ୟସ୍ତତା । ସେ ସପରିବାର ଆସିଥିଲେ । ତାଙ୍କର ଶ୍ରେଷ୍ଠ ପରିବାର ସୁଖୀ, ପରିବାର । ସେ ମାନେ ମିଃ ଗୁପ୍ତା,

ତାଙ୍କର ସ୍ତ୍ରୀ ମିସେସ୍ ଗୁପ୍ତା ଓ ଏକମାତ୍ର ସନ୍ତାନ, ଝିଅ ଶୀଲାଗୁପ୍ତା । ମିସେସ୍ ଓ ମିସ୍ ଗୁପ୍ତାଙ୍କୁ ଓଡ଼ିଶାର ଦର୍ଶନୀୟ ସ୍ଥାନ ଦେଖାଇ ଦେବା ଭାର ମୁଁ ଏବଂ ମୋର ଆଉଜଣେ ସହକର୍ମୀ ଅଗସ୍ତି ଉପରେ ପଡ଼ିଥିଲା । ଆମର ମ୍ୟାନେଜର ସା଼ହେବ ମତେ କାହିଁକି ବାଛିଲେ ମୁଁ ଜାଣେନା । ଅଗସ୍ତି ଇତିହାସର ଛାତ୍ର । ବନାରସରେ ପାଠ ପଢ଼ିଛି । ଭଲ ହିନ୍ଦୀ କହିପାରେ । ଭଲ କଥା ଜମେଇ କହିପାରେ । ସେ ପ୍ରକୃତରେ ଉପଯୁକ୍ତ ବ୍ୟକ୍ତି । କିନ୍ତୁ ମୋ ଉପରେ ଦାୟିତ୍ୱଟା ଅଜାଡିକୁ ବଣିଜ ଅଡ଼ୁଆ ପରି ହୋଇଗଲା । ଯାହାହେଉ ଦାୟିତ୍ୱ ସମ୍ପନ୍ନ କରିବାକୁ ହେଲା । କାର୍‌ରେ ମିସେସ୍ ଗୁପ୍ତା ମିସ୍‌ଗୁପ୍ତାଙ୍କୁ ନେଇ ନନ୍ଦନକାନନ, ଖଣ୍ଡଗିରି, ଧଉଳି ଗିରି, ଲିଙ୍ଗରାଜ ମନ୍ଦିର, ପୁରୀ, କୋଣାର୍କ, ଚିଲିକା, ବାରବାଟୀ ଷ୍ଟାଡ଼ିୟମ୍ ଇତ୍ୟାଦି ଇତ୍ୟାଦି ବହୁତ ସ୍ଥାନ ଯିବାକୁ ପଡ଼ିଲା । ଦୀର୍ଘ ସ୍ତତଦିନ ସେହି କାମରେ ହିଁ କଟି-ଗଲା ।

ବର୍ତ୍ତମାନ ଏଇ ଗୁପ୍ତା ମାନଙ୍କ ସମ୍ପର୍କରେ କିଛି ତୁମକୁ ଜଣାଏ । ମିସେସ୍ ଗୁପ୍ତା ଜଣେ ନିରହଙ୍କାର ଭଦ୍ରମହିଳା । ତାଙ୍କ କଥାବାର୍ତ୍ତା, ଗ୍ଭଲିଚଳନ, ବେଶଭୂଷା ଓ ବ୍ୟବହାରରେ ଅହମିକା ନାହିଁ । କେତେବଡ଼ ଅଫିସରଙ୍କର ସ୍ତ୍ରୀ । ଆଉ ଆମେ ଅଳ୍ପଦିନ ହେଲା ଗ୍ଭକିରି କରିଥିବା ନୂଆ କୁଞ୍ଜୀ ଅଫିସର୍ । ଆମମାନଙ୍କ ସହିତ ସେ ଆଦୌ ବ୍ୟବଧାନ ନରଖି ବ୍ୟବହାର କରୁଥିଲେ । ଆମେ ଯେପରି ତାଙ୍କର ଖାଇବା, ପିଇବା, ରହିବା ଇତ୍ୟାଦି ପ୍ରତ୍ୟେକଟି କଥା ସୁରୁଖୁରୁରେ ହେଉ ବୋଲି ଯତ୍ନ ନେଉଥିଲୁ, ସେ ବି ସେହିପରି ଆମ କଥା ବୁଝୁଥିଲେ । ମା ମାଉସୀଙ୍କ ପରି ତାଙ୍କ କଥାରେ ହାର୍ଦ୍ଦିକତା ଥିଲା । ମତେ ଯେତେବେଳେ ସେମାନଙ୍କ ସହିତ ଯିବା ଦାୟିତ୍ୱ ଦିଆଗଲା ମୁଁ ବହୁତ ଅସ୍ୱସ୍ତି ବୋଧ କରିଥିଲି । କିନ୍ତୁ ମିସେସ୍ ଗୁପ୍ତାଙ୍କ ଅମାୟିକ ବ୍ୟବହାର ଯୋଗୁ ସେ ଅସ୍ୱସ୍ତି ପ୍ରାୟ ଦୂର ହୋଇଗଲା ।

ଆଉ ମିସ୍‌ଗୁପ୍ତା,ମିସ୍ ଶୀଲା ଗୁପ୍ତା । ଟିକିଏ ସ୍ଥୂଳକାୟା । ତଥାପି ତାଙ୍କୁ ସୁନ୍ଦରୀ ନକହିବାର ଉପାୟ ନାହିଁ । ଅନ୍ୟ ନାରୀର ପ୍ରଶଂସା କରୁଚ ବୋଲି ରାଗିବ ନାହିଁ । ତୁମ ପରି ସେ ସୁନ୍ଦରୀ ନୁହନ୍ତି ମ । ତୁମେ ତ ଅନନ୍ୟା ମିସ୍ ଗୁପ୍ତା ଦିଲ୍ଲୀରେ ପି,ଏଚ, ଡ଼ି କରୁଛନ୍ତି । ଦିଲ୍ଲୀର ଝିଅ ତ । କଥାବାର୍ତ୍ତା ବ୍ୟବହାରରେ ତାଙ୍କର ଟିକିଏ ସଂକୋଚ ନାହିଁ । ସେ ନାରୀ, ତେଣୁ ପୁରୁଷଠାରୁ ଅଲଗା—ଏ ଭାବ ତାଙ୍କ ଭିତରେ ନାହିଁ । ବଡ ମେଳାପୀ ଓ ବାବଦୂକା । ଅଗସ୍ତି ତାଙ୍କର କାଉଣ୍ଟର ପାର୍ଟ । ତାଙ୍କ ଦୁହିଙ୍କ ଭିତରେ ମୋ ପରି ସ୍ୱଳ୍ପବାକ୍ ଲୋକର ଅବସ୍ଥା କଣ ହୋଇଥିବ କହିଲ । ତୁମେ ଭାବୁଥିବ, ସେମାନେ ଗପରେ ମଜ୍ଜି ଯାଉଥିବେ ଏବଂ ମୁଁ ଏକଲା ଶୂନ୍ୟ ଆକାଶକୁ

ଗୁହିଁ ରହି ଭାବନାରେ ବୁଡ଼ି ଯାଉଥିବ । ମିସ୍ ଗୁପ୍ତା, ମିସେସ୍ ଗୁପ୍ତା, "ଆପଣ କାହିଁକି କଥା କହୁନାହାନ୍ତି, ଆପଣ କଥା କୁହନ୍ତୁ, ଆପଣ କାହିଁକି ଏତେ ଲାଜକୁଳା' ଇତ୍ୟାଦି କହି କହି ମତେ ବଡ଼ ବ୍ୟସ୍ତ କରି ପକାଉଥିଲେ । ଖାଇବା ବେଳେ ମିସେସ୍ ଗୁପ୍ତା ନିଜେ ପରଶି ଦେଉଥିଲେ । ସେତେବେଳେ ଅଗସ୍ତି କହୁଥିଲା, ଦିଅନ୍ତୁ, 'ଦିଅନ୍ତୁ ଆଉ କିଛି ଦିଅନ୍ତୁ । ଆପଣଙ୍କ ହାତ ସ୍ପର୍ଶରେ ଏସବୁ ଅମୃତ ପରି ଲାଗୁଛି ।' ଆଉ ମୁଁ କହୁଥିଲି, "ନାଁ ନାଁ, ଆଉ ଦରକାର ନାହିଁ ।' ଫଳ ହେଉଥିଲା ମୁଁ ଲାଜରେ ଖାଇ ନାହିଁ ମନେକରି ମିସେସ୍ ଗୁପ୍ତା ଓ ମିସ୍ ଗୁପ୍ତା ମୋପାଖରେ ବେଶୀ ବେଶୀ ଖାଦ୍ୟ ପରଶି ଦେଉଥିଲେ ।

ଅଗସ୍ତି ସେମାନଙ୍କୁ ଓଡ଼ିଶାଟା ବୁଲି ଗପି ଯାଉଥିବ । ତା ସହିତ ତା ନିଜ ଙ୍କଶର ଗରିମା । ତାଙ୍କର ଗ୍ରାଣ୍ଡ ଫାଦର କିପରି ଯୁଦ୍ଧ କରିଥିଲେ ସେ ତାର ଗୃଷ୍ଟ ବିବରଣୀ ଦେଉଥିବା ପରି ମନେ ହେଉଥିଲା । ଅଗସ୍ତିକୁ କିନ୍ତୁ ମୁଁ ପ୍ରଶଂସା ନକରି ରହିପାରୁନି । ସେ ସବୁବେଳେ ବଡ଼ ସଙ୍କୋଚ ହୀନ । ମୋର ଧାରଣା ଥିଲା ମ୍ୟାନେଜିଂ ଡ଼ିରେକ୍ଟରଙ୍କର ସ୍ତ୍ରୀ ଏବଂ କନ୍ୟା ସହିତ ବ୍ୟବହାର କଲାବେଳେ ସେ ଟିକିଏ ଦୂରତା ରକ୍ଷାକରିବ । ବିଶେଷତଃ ମିଃ ଗୁପ୍ତା ଯେତେବେଳେ ଜଣେ ଭାରି କଡ଼ା ଲୋକ ବୋଲି ବିଖ୍ୟାତ । କିନ୍ତୁ ସେ ବୋଧହୁଏ ସେ କଥା ଭୁଲି ଯାଇଥିଲା ସେତେବେଳେ । କେତେବେଳେ ସେ ହଜାରେ ବାରଣ ସତ୍ତ୍ୱେ ମିସ୍ ଗୁପ୍ତାଙ୍କ ଯୋତାକୁ ହାତରେ ଧରି ଗ୍ଲାଲିଯାଉଥିଲା ତ କେତେବେଳେ କହୁଥିଲା, 'ଆସନ୍ତୁ, ଆପଣଙ୍କୁ କାନ୍ଧରେ ବସାଇ ନେଇଯିବି । ଖଣ୍ଡଗିରିରେ ପାହାଚ ଉଠିଲା ବେଳକୁ ମିସେସ୍ ଗୁପ୍ତାଙ୍କୁ କଷ୍ଟ ହେଉଥିଲା । ମୁଁ ଭାବୁଥିଲି ହାତ ବଢ଼େଇ ତାଙ୍କ ହାତଧରି ତାଙ୍କୁ ସାହାଯ୍ୟ କରିବି । କିନ୍ତୁ ମୋଭିତରେ ପାହାଡ଼ ପରି ସଙ୍କୋଚ । ଅଥଚ ଅଗସ୍ତି ଦରକାର ଥାଉ ନଥାଉ, ମିସ୍ ଗୁପ୍ତାଙ୍କ ହାତକୁ ବାରମ୍ବାର ଧରି ପକାଉଥିଲା । ମୁହଁ ଉପରେ ବଡ଼ ବଡ଼ କଥା କହି ପ୍ରଶଂସା କରିବାକୁ ତାର ଜିଭ ଟିକିଏ ବି ଅଟକୁ ନଥିଲା । ମିସ୍ ଗୁପ୍ତାଙ୍କ ଦାୟିତ୍ୱ ଅଗସ୍ତିକୁ ଦେଇ ମୁଁ ମିସେସ୍ ଗୁପ୍ତାଙ୍କ ପାଖେ ପାଖେ ପ୍ରାୟ ରହୁଥିଲି । ମିସେସ୍ ଗୁପ୍ତା ବି ଜଣେ ଗପୁଡ଼ି ଲୋକ । ତାଙ୍କ କଥାରେ ମଝିରେ ହଁ ମାରି, ମୁଣ୍ଡ ଟୁଙ୍ଗାରି, ପଦେ ଅଧେ କଥା କହି ମୁଁ ଚାଲିଯିବାକୁ ଚେଷ୍ଟା କରୁଥିଲି ।

ଶେଷ ପର୍ଯ୍ୟନ୍ତ ମୋର ଭୟ ଥିଲା, ସେମାନଙ୍କର ଯଦି କିଛି ଅସୁବିଧା ହୁଏ ତାହାହେଲେ ପରିଣାମ ବଡ଼ ଶୋଚନୀୟ ହେବ । ବଡ ଲୋକଙ୍କ କଥା କି ନା ! କିନ୍ତୁ ଯାହାହେଉ ସେପରି କିଛି ହୋଇନାହିଁ । ଫେରିଯିବା ପୂର୍ବରୁ ମିଃ ଗୁପ୍ତାଙ୍କ

ସମକ୍ଷରେ ମିସେସ୍ ଗୁପ୍ତା ଅଗସ୍ତିଙ୍କୁ ଓ ମୋତେ ବହୁତ ପ୍ରଶଂସା କଲେ । ଭୟ ଦୂର ହେଲା ।

ଅଗସ୍ତି କଣ ମତେ କହିଲା ଶୁଣିବ ? କହିଲା, "ଧେତ୍, ଏପରି ଝିଅ ମୁଁ ବହୁତ ଦେଖିଚି । ବନାରସ୍‌ରେ ମୁଁ କେତେ ବଡ଼ ବଡ଼ ଲୋକଙ୍କର ଝିଅଙ୍କୁ ଜାଣେ । ସେମାନଙ୍କ ତୁଳନାରେ ମିସ୍ ଗୁପ୍ତା କିଛି ନୁହେଁ । You can win her by a few words and own her by a few chips.'

ଏଭଳି ଅଶୋଭନୀୟ ମନ୍ତବ୍ୟ ମତେ ବଡ଼ ଖରାପ ଲାଗିଲା । ମୋର ତ ତାଙ୍କ ବିଷୟରେ କିଛି ଧାରଣା ନାହିଁ । ନାଁ ବୋଇଲେ ମୁଁ ଜାଣେ ତୁମଙ୍କୁ । କେତେ ଦୂର ଜାଣେ ତା ବି ଜାଣେନା । ତେଣୁ ମୁଁ କିଛି ପ୍ରତିବାଦ କରିପାରିଲି ନାହିଁ ।

ମିସ୍ ଗୁପ୍ତା ଉପାଖ୍ୟାନ ଏଠିକି ଥାଉ ।

ତୁମେ ମୋ ଉପରେ ରାଗି ନାହଁତ । ଚିଠି ଦେବ । ପରୀକ୍ଷା ପାଇଁ ବ୍ୟସ୍ତତା ଭିତରେ ମଧ୍ୟ ମୋ ପାଇଁ ଚିଠି ଲେଖିବାକୁ ସମୟ ରଖିବ । ମୋର ଅଶେଷ ପ୍ରେମ ନିଅ । । ଇତି ।

ତୁମର ଆନନ୍ଦ ।

—ଶୀଲା ଗୁପ୍ତାର ଚିଠି—

ପ୍ରିୟ ଆନନ୍ଦ,

ଆଜିକୁ ଠିକ୍ ୩୦ ଦିନ ତଳେ ମୁଁ ଆପଣଙ୍କ ସହିତ ଥିଲି । ତା ପରେ ବିତି ଯାଇଥିବା ୩୦ ଦିନ କାଳ ମୁଁ ଆପଣଙ୍କ ପାଖରେ ଆପଣଙ୍କ ଅଲକ୍ଷ୍ୟରେ ହିଁ ରହିଚି । ଏହା ଭିତରେ ମୁଁ ଆପଣଙ୍କ ପାଖକୁ ୬ଖଣ୍ଡ ଚିଠି ଲେଖିଚି, ଖଣ୍ଡିଏ ଉତ୍ତର ନପାଇ ମଧ୍ୟ । କେତେ ଆଶଙ୍କା ମନ ଭିତରକୁ ଆସୁଚି । ଆପଣ କଣ ମୋର ଖଣ୍ଡିଏ ବି ଚିଠି ପାଇ ନାହାନ୍ତି ? ନ ପାଇଥିଲେ ମଧ୍ୟ କଣ ଖଣ୍ଡିଏ ଚିଠି ଲେଖିବାରେ କିଛି ବାଧା ଥିଲା ? ଆମର ପରିଚୟର ଗଭୀରତା କଣ ଖଣ୍ଡିଏ ମାମୁଲି ଚିଠି ପର୍ଯ୍ୟନ୍ତ ନୁହେଁ ? ଆପଣ ଯଦି ଚିଠି ସବୁ ପାଇଥାଆନ୍ତି, କିପରି ନୀରବ ରହିପାରିଛନ୍ତି ମୁଁ ଭାବିପାରୁ ନାହିଁ । ଏଇ ଶୀତ ଦିନରେ ପାଣି ଯେପରି ବରଫ ପାଲଟି ଯାଉଛି, ଆପଣ କଣ ସେପରି ପଥର ପାଲଟି ଯାଇଛନ୍ତି । ମୋର ଇଚ୍ଛା ହେଉଛି, ମୁଁ ଏଇ ମୁହୂର୍ତ୍ତରେ ଆପଣଙ୍କ ପାଖକୁ ଯିବି ଓ ପଚାରିବି, "କାହିଁକି ଆପଣ ମୋର ଖଣ୍ଡିଏ ଚିଠିର ବି ଉତ୍ତର ଦେଇ ନାହାନ୍ତି ? କାହିଁକି ? କାହିଁକି ?" ଆପଣଙ୍କର ଉତ୍ତର କଣ ହେବ ସତେ ! ଆପଣ କଣ କହିବେ, ମୋର ଚିଠି ପଢ଼ି ଆପଣ ଅଳିଆ ଗଦାକୁ ଫିଙ୍ଗି ଦେଇଛନ୍ତି । ମୋ ଚିଠିର ଭାଷା ଆପଣଙ୍କ ପାଇଁ

ବୋଧଗମ୍ୟ ହୋଇନାହିଁ । ମୋ ଚିଠି ଆପଣଙ୍କ ପାଇଁ ମୂଲ୍ୟହୀନ । ଆପଣ ଏପରି କାହିଁକି ଆହୁରି ହୃଦୟକୁ ଭଙ୍ଗା କଠୋର କଥା କହିପାରନ୍ତି । ଆପଣଙ୍କର ସେ ଅଧିକାର ଅଛି । ତଥାପି ମୁଁ ଗ୍ରହଣୀୟ ମତେ କହନ୍ତୁ । କାହିଁକି ଆପଣ ଏପରି କମ୍ପ୍ଲେ ?

ମୁଁ ଜାଣି ପାରୁନି କାହିଁକି ମୁଁ ଆପଣଙ୍କ ଉପରେ ଏତେ ଦାବୀ ଅଧିକାର ଜାରି କରୁଚି । ଖଣ୍ଡିଏ ଚିଠି ପାଇବାକୁ ଯୋଗ୍ୟ ନ ହୋଇ ମଧ୍ୟ ମୁଁ କାହିଁକି ପୁଣି ଚିଠି ଲେଖୁଛି । ଉତ୍ତର ପାଇବାକୁ ପ୍ରତ୍ୟେକଦିନ ଉତ୍ସୁକ ହୋଇରହିଁ ରହୁଚି ।

କେତେ କଣ ଲେଖିବାକୁ ଇଚ୍ଛା ହେଉଛି । କିନ୍ତୁ କିଛି ଲେଖିପାରୁନି । କେଉଁ ସାହାସରେ ବା ଲେଖିବି । ଇଚ୍ଛା ହେଉଛି ଲେଖିବି, 'ଆପଣ ଥରେ ଆସନ୍ତୁ । ଦିନକ ପାଇଁ ଅନ୍ତତଃ ଆସନ୍ତୁ' ଆଉ ଏସବୁ ଭିକାରୀର ସମ୍ରାଟ ହେବାର ସ୍ୱପ୍ନପରି ଅଳୀକ । ।ଇତି।

ଶୀଲା

ପୁ, ନ୍ତୁ,: ମିଃ ଅଗସ୍ତି ଏହା ଭିତରେ ୪ । ୫ ଖଣ୍ଡ ଚିଠି ଦେଲେଣି ବଡ଼ ଲମ୍ବା ଲମ୍ବା ଚିଠି । ମୋର ପଢ଼ିବାକୁ ଧୈର୍ଯ୍ୟ ନାହିଁ । ତାଙ୍କ ପାଖକୁ ଚିଠି ଦେବାକୁ ମୋଟେ ଅବସର ପାଉନି । ତାଙ୍କୁ କହିଦେବେ ।

—ଆନନ୍ଦ କୁମାରର ଚିଠି—

ଭୁବନେଶ୍ୱର

ସ୍ନେହର ଅର୍ଚ୍ଚନା,

ତୁମ ଚିଠି ବର୍ତ୍ତମାନ ପାଇଲି । ବଡ଼ ଇଚ୍ଛା ଥିଲା ତୁମର କଲେଜ ଛୁଟି ହେବା ପୂର୍ବରୁ ମୁଁ ଥରେ ଯାଇ ତୁମକୁ ଦେଖି ଆସିବି । କିନ୍ତୁ ମତେ ଛୁଟି ମିଳିଲା ନାହିଁ । କାହିଁ ଜୟପୁର, କାହିଁ ଭୁବନେଶ୍ୱର । ଯାଇ ପାରିଲି ନାହିଁ ବୋଲି ମନଟା ବାସ୍ତ ଖରାପ ହେଉଛି ।

ହଁ, ଏହା ଭିତରେ ମିସ୍ ଶୀଲା ଗୁପ୍ତାଙ୍କଠାରୁ ୫ମ ଚିଠି ପାଇଛି । ତୁମର ସନ୍ଦେହ ମୋଚନ ପାଇଁ ତାଙ୍କର ସବୁଯାକ ଚିଠି ଏ ଚିଠି ସହିତ ପଠାଇ ଦେଉଛି । ତୁମେ ସେଥିରୁ ସ୍ପଷ୍ଟ ବୁଝି ପାରିବ ଯେ ତାଙ୍କ ପାଖକୁ ମୁଁ ଖଣ୍ଡିଏ ବି ଚିଠି ଦେଇନି । ତେଣୁ ତୁମର ଯୁକ୍ତି, "ଏକ ହାତରେ ତାଳି ବାଜେ ନାହିଁ" ନିରର୍ଥକ । ବରଂ ଶୀଲା ଗୁପ୍ତା ତାଙ୍କର ପ୍ରତ୍ୟେକଟି ଚିଠିରେ ନିଜକୁ ଯେପରି ହୀନ୍ମାନ୍ୟ କରି ପକାଉଛନ୍ତି,

ମୁଁ ସେତକ ସଂକୁଚିତ ହୋଇପଡ଼ୁଛି । ଭାବୁଛି ତାଙ୍କ ପାଖକୁ ଲେଖି ଜଣାଇ ଦେବି ଯେ ମୁଁ ଆଗରୁ ଅର୍ଚ୍ଚନା ନାମ୍ନୀ ଏକ ଅପୂର୍ବ ସୁନ୍ଦରୀ, ଅତୁଳନୀୟା ନାରୀ ପାଶରେ ପ୍ରେମ ପାଶରେ ଏପରି ବନ୍ଧା ହୋଇ ପଡ଼ିଛି ଯେ ଟିକିଏ ବି ହଲଚଲ ହେବାର ଉପାୟ ନାହିଁ । ଆଉ ମାତ୍ର ୩ମାସ ପରେ ତାଙ୍କ ସହିତ ମୋ ବିବାହ ହେବା ସ୍ଥିରୀକୃତ । ତେଣୁ ମୋ ଉପରେ ଆଉ ଆଶା ନରଖିବା ତାଙ୍କ ପକ୍ଷରେ ବିଜ୍ଞତାର ପରିଚୟସୂଚକ ହେବ ।

ତୁମ ଚିଠିଟି ପାଇ ସାଙ୍ଗେ ସାଙ୍ଗେ ଏ ଛୋଟ ଚିଠିଟି ଲେଖି ଦେଉଛି । ପୁଣି ଆଗ୍ରହରେ ଚିଠି ଲେଖିବି । ମୋର ଅଶେଷ ପ୍ରେମ ନିଅ । । ଇତି ।

ତୁମର ଆନନ୍ଦ

ବି: ଦ୍ରଃ ଅଳ୍ପ ସମୟ ତଳେ ଅଗସ୍ତି ସହିତ ଦେଖା ହେଲା । କହୁଥିଲା, ମିସ୍ ଶୀଲା ଗୁପ୍ତା ତା ପାଖକୁ ବହୁତ ଚିଠି ଲେଖି ତାକୁ ବୋର୍ କରି ପକେଇ ଲେଣି । ଆରେ ବାବାରେ, ନାରୀ ଚରିତ୍ର ତ ବୁଝିବା କଷ୍ଟକର ।

—ଅଗସ୍ତିର ଚିଠି—

ଭୁବନେଶ୍ୱର

ମିସ୍ ଶୀଲା,

ଏ ଅଯାଚିତ ଓ ଅବାଞ୍ଛିତ ଚିଠି ପାଇଁ କ୍ଷମା ମାଗି ରଖୁଛି । ମୋର ଆଉ ଚିଠି ନ ଲେଖିବାହିଁ ଉଚିତ । କିନ୍ତୁ ଗୋଟିଏ ବିଶେଷ ଘଟଣା ଯୋଗୁ ଚିଠି ଲେଖିବାର ସୁଯୋଗ ଛାଡ଼ୁ ନାହିଁ । ଆପଣଙ୍କର ଆନନ୍ଦକୁମାରର କଥା ମନେଥାଇ ପାରେ । ମୋର ସେଇ ସ୍ୱଳ୍ପବାକ୍ ସହକର୍ମୀ, ଯେ ଆମମାନଙ୍କ ସହିତ ବିଭିନ୍ନ ସ୍ଥାନ ବୁଲିବାକୁ ଯାଇଥିଲା । ଏଇ ମାସ ୨୪ ତାରିଖରେ ତାର ବିବାହ । ଆପଣଙ୍କୁ ନିମନ୍ତ୍ରଣ ପତ୍ର ଦେଇ ଥାଇପାରେ । ଆପଣ ତାକୁ ଲାଜକୁଳା ବୋଲି କହୁଥିଲେ ନା । କିନ୍ତୁ ସେ ବୁଡ଼ି ବୁଡ଼ି ପାଣି ପିଇବା ବାଲା । ତାର ଏଇ ବିବାହ ପ୍ରେମ ବିବାହ । ଏକଥା ମତେ ଆଜି ପର୍ଯ୍ୟନ୍ତ ଜଣା ନଥିଲା ! ଆନନ୍ଦ କୁମାର ପ୍ରେମ କରିପାରେ ଏହା ସତରେ ଏକ ଆଶ୍ଚର୍ଯ୍ୟ ଜନକ ଘଟଣା ନୁହେଁ କି ? ଏହା ପୃଥିବୀର କେଉଁ ଆଶ୍ଚର୍ଯ୍ୟ ନୁହନ୍ତି ତ ।

ଶୁଭେଚ୍ଛା ସହ । ଇତି ।

ଅଗସ୍ତି

## —ମିସ୍‌ ଶୀଲା ଗୁପ୍ତାର ଚିଠି—

ନୂଆଦିଲ୍ଲୀ

ପ୍ରିୟ ଅଗସ୍ତି,

ଆପଣଙ୍କର ସବୁ ଚିଠି ପାଇଛୁ ।

ମୁଁ ବହୁତ ବହୁତ ଦୁଃଖିତ ଯେ ଆଜି ପର୍ଯ୍ୟନ୍ତ ମୁଁ ଖଣ୍ଡିଏ ଚିଠି ବି ଦେଇ ନାହିଁ । ମତେ ଆପଣ ବହୁତ ଅଭଦ୍ର ମନେ କରିଥିବେ । ମୁଁ ଆନ୍ତରିକତାର ସହିତ କ୍ଷମା ମାଗୁଛି ।

ଆଜି ପର୍ଯ୍ୟନ୍ତ ମତେ ବହୁତ କଥା ଚିନ୍ତା କରିବାକୁ ପଡ଼ୁଛି । ମୁଁ ଶେଷରେ ଆପଣଙ୍କ ପ୍ରସ୍ତାବକୁ ଗ୍ରହଣ କରୁଚି । ବାବା ଓ ମାଙ୍କର ସମ୍ମତି ମୁଁ ସଂଗ୍ରହ କରିଚି ।

ଏଇ ମାସ ୨୪ ତାରିଖରେହିଁ ଆମର ବିବାହ ରେଜିଷ୍ଟ୍ରେସନ ହେଉ ।

ଆପଣ ଚିଠି ପାଇବା ମାତ୍ରେ ଏଠାକୁ ଆସିଲେ ଭଲ ହେବ । ଇତି ।

ଶୀଲା ।

୧୯ । ୫ । ୭୭

ଭୁବନେଶ୍ବର



# ମିଥୁନ ଲଗ୍ନ

ଭୋରର ପାଞ୍ଚଟା ବେଳେ ଟ୍ରେନ୍ ସମ୍ବଲପୁରରେ ପହଞ୍ଚିଲା । ଜୟନ୍ତ ଟ୍ରେନ୍‌ରୁ ଓହ୍ଲାଇ ଶକ୍‌ଟା ଧରି ସିଧା ଚାଲିଲେ ବନ୍ଧୁ ଅମିତାଭର ଘରକୁ ।

ଅମିତାଭ ସମ୍ବଲପୁରରେ ନଥିଲେ । ଅଲ୍‌ଇଣ୍ଡିଆ ମେଡ଼ିକାଲ କନ୍‌ଫରେନ୍‌ସରେ ଯୋଗ ଦେବାକୁ ପୁନା ଚାଲିଯାଇଥିଲେ । ଜୟନ୍ତଙ୍କୁ ଅଭ୍ୟର୍ଥନା ଜଣାଇଲେ ବନ୍ଧୁପତ୍ନୀ ସୁଜାତା ।

ଜୟନ୍ତ ହତାଶ କଣ୍ଠରେ କହିଲେ, 'ଅମିତାଭ ନାହିଁ !'

କିନ୍ତୁ ଅମିତାଭ ଯେ ନଥିବେ ସେ କଥା ଜୟନ୍ତ କଣ ଜାଣି ନଥିଲେ ? ଡାକ୍ତର ମାନଙ୍କର ସର୍ବ ଭାରତୀୟ ସମ୍ମିଳନୀକୁ ନଯାଇ ବିଦ୍ୟାଗତ ପ୍ରାଣ ଅମିତାଭ କଦାପି ଶାନ୍ତିରେ ରହି ପାରିବେ ନାହିଁ ଏକଥା ତାଙ୍କୁ ଖୁବ୍ ଭଲଭାବରେ ବିଦିତ ଥିଲା । ଅମିତାଭ ନାହାନ୍ତି ଜାଣି ସେ ବରଂ ଖୁସୀ ହେଲେ । ତଥାପି ସେ କଣ୍ଠରେ ହତାଶା ପ୍ରକାଶ କରିବାକୁ ଚେଷ୍ଟାକଲେ ।

ଜୟନ୍ତ କହିଲେ,"ଯାଃ ମୋର ଆସିବାଟା ପଣ୍ଡ ହୋଇଗଲା ! ମୁଁ ଭାବିଥିଲି, ଅମିତାଭ ସହିତ ଦିନେ ଦୁଇଦିନ ଆରାମରେ କଟାଇ ଯାଇଥାନ୍ତି—"

ସୁଜାତା ଜୟନ୍ତଙ୍କୁ ଆଶ୍ୱାସନା ଦେବା ଭଙ୍ଗୀରେ କହିଲେ, "ବନ୍ଧୁ ନଥିଲେ କଣ ଆରାମରେ ସମୟ କଟିବ ନାହିଁ ? ବନ୍ଧୁ ଆସିବାଯାଏ ରହନ୍ତୁ ।"

ଜୟନ୍ତ ଆଶା କରୁଥିଲେ, ସୁଜାତା ସେଇକଥା କହନ୍ତୁ । ତେଣୁ ସୁଜାତାଙ୍କ କଥା ତାଙ୍କୁ ବହୁତ ଭଲ ଲାଗିଲା । ସେ ଆହୁରି ଖୁସୀ ହେଲେ ଯେତେବେଳେ ସେ ଜାଣିଲେ ଯେ ଅମିତାଭର ବାପା ବୋଉଙ୍କୁ ନେଇ ତାର ସାନଭାଇ

କଟକ ଯାଇଛନ୍ତି । ତେଣୁ ଘରେ କେବଳ ସୁଜାତା ଓ ଛୋଟ ପିଲାମାନେ ହିଁ ଅଛନ୍ତି ।

ଆଉ ସୁଜାତା ?

ସୁଜାତା ତାଙ୍କର ଖୁସୀ ଖୁସୀ ଭାବ ନିଷ୍କପଟ ଚରିତ୍ରରେ ପ୍ରକାଶ କରି କହିଲେ, "ଘରେ କେହି ନାହାନ୍ତି । ବହୁତ ବୋର୍ ଲାଗୁଥିଲା । ଯାହେଉ ଆପଣ ଆସି ଯାଇ-ଛନ୍ତି । ବନ୍ଧୁ ନଫେରିବା ଯାଏ ଆପଣ ଯାଇ ପାରିବେ ନାହିଁ ।"

ଜୟନ୍ତ ସୁଜାତାଙ୍କ କଥାଶୁଣି ଆହୁରି ପୁଲକିତ ହେଲେ । ସୁଜାତାଙ୍କର ଛୋଟ ଛୋଟ ଶୁଭ୍ର ଦନ୍ତପନ୍ତି ମଧ୍ୟଦେଇ ଫୁଟି ଉଠୁଥିବା ହସ ତାଙ୍କର ମୁଖଶ୍ରୀକୁ ଅନନ୍ୟ ସୁନ୍ଦର ଆଭାରେ ମଣ୍ଡିତ କରି ଦେଇଥିଲା । ଜୟନ୍ତ ସେ ରୂପ ଦେଖି ମୁଗ୍ଧ ହେଲେ ।

ଜୟନ୍ତ ଘରଭିତରକୁ ଗଲେ ।

'ଚା ଖାଇଛନ୍ତି ?' ସୁଜାତା ପ୍ରଶ୍ନକଲେ ।

'ନା, ମିଲୁ ଶ୍ରୀହସ୍ତ ତିଆରି ଗରମ ଗରମ ଚା କପେ ।'

ଚାକର ଜୟନ୍ତଙ୍କର ଜିନଷପତ୍ର ଘରଭିତରକୁ ନେଇଗଲା । ପିଲାମାନେ ସେ ପର୍ଯ୍ୟନ୍ତ ଉଠି ନଥିଲେ । ସୁଜାତା ଚା' କରିବାକୁ ଚାଲିଗଲେ । ଜୟନ୍ତ ଡ୍ରଇଂ ରୁମରେ ବସି ଟେବୁଲ୍ ଉପରେ ପଡ଼ିଥିବା ସିନେମା ପତ୍ରିକା ଉଠେଇ ନେଇ ଛବି ଦେଖିଲେ ।

ଅଳ୍ପ ସମୟ ପରେ ସୁଜାତା ନିଜେ ଚା' ନେଇ ଫେରିଲେ ।

ଚା ଖାଉ ଖାଉ ଜୟନ୍ତ କହିଲେ, 'ଆପଣଙ୍କ ହାତ ତିଆରି ଏଇ ଅପୂର୍ବ ଚା ଉପରେ ମୋର ସତରେ ବହୁତ ଲୋଭ । ସେଥିପାଇଁ ଆପଣ ମୋର ପ୍ରାତଃ ସ୍ମରଣୀୟା ।'

"ମାନେ ?" ସୁଜାତା ପ୍ରଶ୍ନ କଲେ ।

"ମାନେ ସହଜ । ପ୍ରତିଦିନ ସକାଳେ ବିସ୍ୱାଦକର ଚା' ଖାଇବା ବେଳେ ମୁଁ ଆପଣଙ୍କର ଏଇ ଚା'କୁ ଅର୍ଥାତ୍ ଆପଣଙ୍କୁ ସବୁବେଳେ ଲୋଭରେ ସହିତ ସ୍ମରଣ କରେ ।"

"ଗ୍ରୁ' କରିବାଟା କଣ ଏତେ କଷ୍ଟକର କଥା ! ମାମାଙ୍କୁ ଶିଖାଇ ଦେଉ ନାହାନ୍ତି ?"

ଏଇଟା ଶିଖିବା କଥା ନୁହେଁ । ଏଇଟା ହାତର ଗୁଣ । ଆପଣଙ୍କର ଲକ୍ଷ୍ମୀହାତର ସ୍ପର୍ଶରେ ଖାଲି ଗ୍ରୁ' ନୁହେଁ, ସବୁ କିଛି ମଧୁର ହୋଇଯାଏ ।" ସୁଜାତା କହିଲେ, "ଥାଉ, ଥାଉ, ଆଉ ବାକ୍ ଚାତୁରୀ କରନ୍ତୁ ନାହିଁ । ମାମା ଯଦି ଶୁଣନ୍ତା ନା ଏକଥା—"

"ସତ କହିବାକୁ କଅଁ ଡରିବି । ସତ କହିପଛେ ମଲେ ମରିବି" । ସୁଜାତା ଗ୍ରୁ' କପ୍ ନେଇ ହସି ହସି ଚାଲି ଗଲେ ।

\+ \+ \+

'ଆପଣଙ୍କର ପ୍ରୋଗ୍ରାମ କଣ ?' ସୁଜାତା ପ୍ରଶ୍ନ କଲେ ।

"ମୋର ପ୍ରୋଗ୍ରାମ ? ମୋର ପ୍ରୋଗ୍ରାମ, ଅମିତାଭ ଯେହେତୁ ନାହିଁ, ବନ୍ଧୁ ଘରେ ଶ୍ରୀମୁଖକୁ ପତ୍ନୀଙ୍କର ବସି ରହିବା । ବନ୍ଧୁ ପତ୍ନୀଙ୍କ ମୁଖରୁ ନିଃସୃତ ବାଣୀ ସୁଧା ପାନ କରିବା । ବନ୍ଧୁ ପତ୍ନୀଙ୍କ—"

"ଥାଉ ଥାଉ । ମୁଁ ଜାଣି ସାରିଲିଣି । ଆପଣ କ୍ଲାସରେ ସାହିତ୍ୟରେ ହାଇଏଷ୍ଟ ନମ୍ବର ରଖୁଥିଲେ । ମୁଁ କହୁଥିଲି, ଚାଲନ୍ତୁ ବୁର୍ଲା ଯିବା । ସେଇଠି ଦୁଇ ପ୍ରହରଟା କାଟିବା ଅଶୋକ ନିବାସରେ ।" ସାଙ୍ଗରେ ପ୍ୟାକେଟ୍ ଲଞ୍ଚ୍ ନେଇ ଯିବା । ଏ ଯେଉଁ ଗରମ ପଡ଼ୁଚି ନା ! ସନ୍ଧ୍ୟାବେଳକୁ ଫେରିବା ।"

ପ୍ରସ୍ତାବକୁ ଉଚ୍ଛ୍ୱସିତ ଆନନ୍ଦରେ ଗ୍ରହଣ କଲେ ଜୟନ୍ତ । କହିଲେ, "ଚମତ୍କାର ପ୍ରସ୍ତାବ । ଆପଣଙ୍କର ଗୋଟାଏ ଆର୍ଟିଷ୍ଟିକ୍ ଚେତନା ଅଛି । ସନ୍ଧ୍ୟା ବେଳେ ଫେରି ଆସି ସିନେମା ଦେଖାଯାଉ ।"

"ନାଁ, ଆଜି ନୁହେଁ । ସେ ପ୍ରସ୍ତାବ କାଲିକୁ ରହିଲା ।"

ଜୟନ୍ତ ସୁଜାତାଙ୍କର ପ୍ରସ୍ତାବକୁ ସ୍ୱୀକାର କରି ନେଲେ ।

ଯଥା ସମୟରେ କାର୍‌ରେ ବସି ସେମାନେ ବୁର୍ଲା ଗଲେ । ହୀରାକୁଦ ବନ୍ଧରେ ବସି ଜଳ ଭଣ୍ଡାରର ନୀଳ ଜଳରାଶି ଓ ଦୂର ଦିଗନ୍ତର ଶୋଭା ଉପଭୋଗ କଲେ । ପ୍ୟାକେଟ୍ ଲଞ୍ଚରେ କ୍ଷୁଧା ନିବାରଣ କଲେ । ଆରାମରେ ଅଶୋକ ନିବାସରେ ମଧ୍ୟାହ୍ନ ବିଶ୍ରାମ କଲେ । ଏବଂ ସନ୍ଧ୍ୟା ବେଳକୁ ସମ୍ବଲପୁରକୁ ଫେରି ଆସିଲେ ।

ଦୀର୍ଘ ୧୦ବର୍ଷର ପରିଚୟ ଭିତରେ ସୁଜାତା ଓ ଜୟନ୍ତ ପରସ୍ପରର ଯେତିକ ନିକଟବର୍ତ୍ତୀ ହୋଇ ନଥିଲେ ସେହି ଦିନକ ଭିତରେ ତା ଠାରୁ ବହୁବେଶୀ ନିକଟତର ହୋଇ ପଡ଼ିଥିବା ପରି ବୋଧକଲେ । ତେଣୁ ବୁର୍ଲାରୁ ଫେରିବା ବେଳେ

କାର୍‌ର ପଛ ସିଟ୍‌ରେ ପରସ୍ପରକୁ ସ୍ପର୍ଶ କରି ବସିବା ବେଳେ ସେମାନଙ୍କ ଭିତରେ ସଙ୍କୋଚ ନଥିଲା । ବରଂ ଥିଲା ଏକ ଗୋପନ ପୁଲକ । କାର୍‌ର ଚଳନଯୋଗୁ ଯଦି ସେମାନଙ୍କର ଦେହ ସହିତ ଦେହ ଟିକିଏ ବେଶୀ ଲାଗି ଯାଉଥିଲା ତାହା ଉଭୟଙ୍କୁ ଭଲ ଲାଗୁଥିଲା ।

+ × +

ସୁଜାତା ଓ ମାନି ବା ମାନିନୀ ଥିଲେ ପଢ଼ାସାଥୀ । ଗାଲ୍‌ସ୍କୁଲରେ ୬ବର୍ଷ ଓ ଶୈଳବାଳା ମହିଳା କଲେଜରେ ୩ବର୍ଷ ଏହିପରି କ୍ରମାନ୍ୱୟରେ ୯ବର୍ଷ କାଳ ସେମାନେ ଏକାଠି ପଢ଼ିଥିଲେ । ସୁଜାତା ଥିଲେ ସୁନ୍ଦରୀ । ତନୁ ପାତଳୀ, ସୁବର୍ଣ୍ଣା । ହାର୍ମୋନିୟମ ବଜାଇ ଗୀତଗାଇ ପାରୁଥିଲେ । ଉଷା ମେସିନ୍ ଚଳେଇ ସାୟା ବ୍ଲାଉଜ୍ ସିଲେଇ କରିବା ଜାଣିଥିଲେ । ପଢ଼ା ପଢ଼ିରେ କୃତିତ୍ୱଶାଳିନୀ ନ ହେଲେ ମଧ୍ୟ ସେ ଭଲ ପଢ଼ୁଥିଲେ ବୋଲି କୁହାଯାଇପାରେ । ଅନ୍ୟ ପକ୍ଷରେ ମାନିନୀ ଥିଲେ ତାଙ୍କ ଠାରୁ କମ୍ ସୁନ୍ଦରୀ । ଟିକିଏ ବାଙ୍ଗରା ଓ ଟିକିଏ ମୋଟୀ । ରଙ୍ଗରେ ଟିକିଏ ଊଣା । ପଢ଼ା ପଢ଼ିରେ ମଧ୍ୟ ସେ ଟିକିଏ ପଛରେ ଥିଲେ । କିନ୍ତୁ ବେଶଭୂଷାର ପରିପାଟୀରେ ସେ ସୁଜାତାଙ୍କଠାରୁ ଆଗରେ ଥିଲେ । ସୁଜାତା କଲେଜକୁ ଆସୁଥିଲେ ବସ୍‌ରେ । କିନ୍ତୁ ଯଦିଓ ବସ୍ ତାଙ୍କର ଘରଦ୍ୱାର ଦେଇ ଆସୁଥିଲା, ମାନିନୀ ଆସୁଥିଲେ ରିକ୍‌ସାରେ । ମାନିନୀ ଥିଲେ ଇନ୍‌କମ୍‌ଟାକସ୍ ଇନ୍‌ସପେକ୍ଟରଙ୍କର ଘରପୁଅରେ ଗୋଟିଏ ବୋଲି ଗେହ୍ଲା ଝିଅ । କିନ୍ତୁ ସୁଜତା ଥିଲେ ଗୃହ ଝିଅ ଓ ଛଅପୁଅଙ୍କର ପିତା ଓ ଅନ୍ୟାନ୍ୟ ବହୁ ଜଞ୍ଜାଳ ଗ୍ରସ୍ତ କିରାଣୀ ପଦରୁ ଉଠିଥିବା ସବ୍‌ଡେପୁଟୀଙ୍କର ଦ୍ୱିତୀୟା କନ୍ୟା । ତଥାପି ଉଭୟଙ୍କ ଭିତରେ ପ୍ରଗାଢ଼ ବନ୍ଧୁତା ଥିଲା । ଉଭୟେ ଏକାଠି ନଡ଼ିଆ ଗଛମୂଳେ ବସୁଥିଲେ, ଏକାଠି ଚନାବାଦାମ ଖାଉଥିଲେ ଏବଂ କେତେ କଣ ଗପୁଥିଲେ ।

ସୁଜାତା ଭାବୁଥିଲେ ମାନିଟା ଟିକିଏ ବୋକୀ । ବାହାହେଲେ କିପରି ଚଳିବ କେଜାଣି ?

ମାନିନୀ ଭାବୁଥିଲେ ସୁଜାତାଟା ଫୁଲେଇ । ସୁନ୍ଦର ବୋଲି ମନେ ମନେ ଗର୍ବରେ ଫାଟି ପଡ଼ୁଛି ।

ତୃତୀୟ ବାର୍ଷିକ ଶ୍ରେଣୀ ଥିଲାବେଳେ ସୁଜାତାଙ୍କର ବିବାହ ପ୍ରସ୍ତାବ ଉଠିଲା । ତା ଆଗରୁ ଯେ ଉଠି ନଥିଲା ତା ନୁହେଁ । କିନ୍ତୁ ତାଙ୍କ ବଡ଼ ଭଉଣୀ ଥିଲେ ଅନୂଢ଼ା । ବଡ଼ ଝିଅର ବାହାଘର ନ କରି ତା ତଳଝିଅ କଥା ବାପା ମା' କାହିଁକି ଚିନ୍ତା କରନ୍ତେ ।

ମାନସୀଙ୍କ ପାଇଁ କିନ୍ତୁ ତାଙ୍କ ବାପା ବହୁ ଆଗରୁ 'ଭଲ' ବରର ସନ୍ଧାନରେ ଥିଲେ ।

ନିଜ ନିଜ ବାହାଘର ବିଷୟରେ ଚୁପ୍‌ଚୁପ୍ କରି ସେମାନେ କଥା ହେଉଥିଲେ । କେଉଁଠୁ ପ୍ରସଙ୍ଗ ଆସିଛି, ବର କିଏ ପଢ଼ିଛି । ବର କଣ କରେ, ତାର ବାପା କଣ କରନ୍ତି; ତାଙ୍କର କଣ ସମ୍ପତ୍ତି ବାଡ଼ି ଅଛି, ବାପା ରାଜି, ମା'ଙ୍କର ମନ ମାନୁ ନାହିଁ ଇତ୍ୟାଦି ସମସ୍ତ ବିବରଣୀ ଆଦାନ ପ୍ରଦାନ କରିବାପାଇଁ ଉଭୟଙ୍କର କୌତୁହଳ ଥିଲା । ଆଗ୍ରହ ବି ଥିଲା ।

ସୁଜାତା କହିଲେ, 'ଏଥର ମୋର ପାଠ ପଢ଼ାରେ ଇତି ହେଲା ଲୋ ମାନସୀ । ଆଉ ତ ମଝିରେ ତିନିଟା ମାସ । ବରର ମା ଓ ଭଉଣୀ ଆସିଥିଲେ । ସେଇ କନ୍ୟା ଦେଖା ପ୍ରହସନ । ମତେ ଖୁବ୍ ରାଗ ଲାଗୁଥିଲା । ଯାହାହେଉ, ଏକାଥରକେ ଇଣ୍ଟର-ଭିଉରେ ପାଶ୍ ହୋଇଗଲି ।'

ତା ପରେ ମାନସୀଙ୍କର କୌତୁହଳ ଓ ଅଧିକ ସମ୍ବାଦ ପାଇଁ ଜିଜ୍ଞାସା ।

"ବରର ନାମ ଅମରେଶ । ଆସିଷ୍ଟାଣ୍ଟ ଇଂଜିନିୟର । ତାଙ୍କ ଘର ପୁରୀରେ । ବାପା ରିଟାୟାର୍ଡ । ବହୁତ ଜମିବାଡ଼ି ଅଛି । ପୁରୀରେ ଓ ଭୁବନେଶ୍ୱରରେ ବଡ଼ ବଡ଼ କୋଠା ଅଛି । ଶାଶୁ କହିଲେ, 'ଲକ୍ଷ୍ମୀଟିଏ' । ନଣନ୍ଦ କହିଲେ, 'ମତେ ହାତ ଗୁଞ୍ଜା ନଦେଲେ ମୁଁ ନାପସନ୍ଦ କରିଦେବି ।"

ମାନସୀ ବହୁତ ଆନନ୍ଦ ପ୍ରକାଶ କଲେ । ସେ ଆନନ୍ଦ ଭିତରେ କିଛି କେଉଁଠି ଦୁଃଖ ନଥିଲା ? ସେ କହିଲେ, 'ତୋତେ ନାପସନ୍ଦ କରିବ କିଏ ମ ? ତୋ ବର ଯଦି ଦେଖିବାକୁ ଆସିଥାଆନ୍ତା ନା, କହିଥାଆନ୍ତା "ଏଇ ସାଙ୍ଗେ ସାଙ୍ଗେ କନ୍ୟାକୁ ନେଇ ଯାଉଛି । ପରେ ପଛକେ ତିଥି ଲଗ୍ନ ଦେଖି ବାହାଘର ହେବ ।"

ମାନସୀର ରସିକତାରେ ସୁଜାତା ହସି ଉଠିଲେ ।

ତାପରେ ସୁଜାତା ବର ବିଷୟରେ ଯେତେ ଯାହା ଖବର ପାଆନ୍ତି, ସବୁ ମାନସୀଙ୍କୁ ଜଣାଇ ଦିଅନ୍ତି । ନ କହିବା ପର୍ଯ୍ୟନ୍ତ ସେ ଅସ୍ୱସ୍ତି ବୋଧ କରନ୍ତି । ବର ଅର୍ଥାତ୍ ଅମରେଶ କେତେ ମସିହାରେ ଆଇ.ଏସ୍. ସି. ପାଶ୍‌କଲା, କେଉଁ ଡ଼ିଭିଜନ ପାଇଥିଲା, କେବେ ଇଂଜିନିୟରିଂ ପାଶ୍‌କଲା, କାହିଁକି ଆଇ, ଆଇ, ଟି ଖଡ଼ଗପୁରରେ ନପଢି ମାଡ୍ରାସରେ ପଢିଲା, ତାଙ୍କ ବାପା ଚିଠି ଲେଖିଛନ୍ତି, 'ସୁଜାତାର ଜାତକ ଅଛି କି ନାହିଁ' ପଚାରିଛନ୍ତି ଇତ୍ୟାଦି ସବୁ କଥା ଯାହା ସବୁ ସୁଜାତା ଜାଣନ୍ତି ସବୁ ମାନସୀଙ୍କ ପାଖରେ ପହଞ୍ଚି ଯାଏ ।

ବାହାଘର ପ୍ରସ୍ତାବ ଆଗେଇ ଗୃଲଲ ।

କିନ୍ତୁ ଶେଷରେ ଭାଙ୍ଗିଗଲା ।

ଜାତକ ମିଲିଲା ନାହିଁ । ନରଗଣପରେ ବାହାହାଘର କରିବାକୁ ବରର ମା ମଙ୍ଗିଲେ ନାହିଁ । ଅସଲକଥା ଇଂଜିନିୟର ବରପ୍ରେରିତ ଯୌତୁକ ଅଭାବରୁ ବରର ବାପା ରାଜି ହେଲେ ନାହିଁ । ଖାଲି କନ୍ୟା ସୁନ୍ଦରରୁ କଣ ମିଳିବ !

କିନ୍ତୁ ଯେଉଁ ତିଥିରେ ସୁଜାତାଙ୍କର ବାହାଘର ହେବାର ଥିଲା, ଠିକ୍ ସେହି ତିଥିରେ ମାନସୀଙ୍କର ବାହାଘର ସମ୍ପନ୍ନ ହୋଇଗଲା । ପନ୍ଦର ଦିନ ଭିତରେ ବାହାଘର ଠିକ୍ ହେଲା ଓ ବାହାଘର ହେଲା । ବର ଇଂଜିନିୟର । ଅବଶ୍ୟ ବର ଅମରେଶ ନୁହେଁ । ଜୟନ୍ତ । ସୁଜାତା ସଙ୍ଗିନୀର ବାହାଘରକୁ ଯାଇଥିଲେ । ମାନସୀକୁ ସୌଭାଗ୍ୟବତୀ ବୋଲି ତାଙ୍କର ମନେ ହୋଇଥିଲା । ଆଉ ସେ ସୌଭାଗ୍ୟ ପ୍ରତି କଣ ତାଙ୍କ ନିଭୃତ ମନରେ ଈର୍ଷା ନଥିଲା !

ସୁଜାତାଙ୍କର ବାହାଘର ହେଲା ଦୁଇବର୍ଷ ପରେ । ବର ଡ଼ାକ୍ତର, ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର । ବର ପିତା ଆଦର୍ଶବାଦୀ ଅଧ୍ୟାପକ । ଯୌତୁକ ପ୍ରଶ୍ନ ଉତ୍ଥାପନ ମଧ୍ୟ କଲେନାହିଁ ।

ସମସ୍ତେ କହିଲେ, ସୁଜାତା ଖାଲି ସୁନ୍ଦରୀ ନୁହେଁ, ଭାଗ୍ୟବତୀ ମଧ୍ୟ ।

ତଥାପି ସୁଜାତାଙ୍କ ମନ ଭିତରେ ବୋଧହୁଏ କେଉଁଠି ଅବଶୋଷର ବେଦନା ରହିଗଲା ।

ସୁଜାତା ଓ ମାନସୀଙ୍କର ପୁନର୍ମିଳନ ହେଲା ରାଉରକେଲାରେ । ସେଇ ସୂତ୍ରରେ ପରିଚୟ ଅମିତାଭଙ୍କ ସହିତ ଜୟନ୍ତଙ୍କର । ସୁଜାତାଙ୍କ ସହିତ ଜୟନ୍ତଙ୍କର ଓ ଅମିତାଭ ସହିତ ମାନସୀଙ୍କର ଏବଂ ଦୁଇ ପରିବାରର ।

ପରଦିନ ପ୍ରାତଃରାଶ ବେଳେ ଜୟନ୍ତ କହିଲେ, "ଆଜି ପାଇଁ ପ୍ରୋଗ୍ରାମ କଣ ?"

"ଆପଣ କହନ୍ତୁ," ସୁଜାତା କହିଲେ । "ଏଇଠି ହାଣ୍ଡଲୁମ ଏକ୍‌ଜିବିସନ୍ ହେଉଛି । ଆଜି ତ ସିନେମା ଯିବା କଥା । କାଲି ଏକ୍‌ଜିବିସନ୍‌କୁ ଗଲେ ହେବ ।"

ଜୟନ୍ତ କହିଲେ, 'ମତେ କାଲି ସକାଳେ ଜରୁରୀ କଟକ ଯିବାକୁ ହେବ ।

ବାଃରେ । ଆପଣ କଣ ଫାଙ୍କି ଦେଇ ପଳାଇବାକୁ ବସିଲେଣି ! ଆପଣଙ୍କ ବନ୍ଧୁ ନ ଫେରିବା ପର୍ଯ୍ୟନ୍ତ ଆପଣଙ୍କୁ ଛାଡୁଛି କିଏ ?"

"ମୋର କାଲପରି ମିଟିଂ ଅଛି । ସତ କହୁଛି, ମୋର ଟିକିଏ ହୋଇ ଯିବାକୁ ଇଚ୍ଛାନାହିଁ । ଏଇ ଅପୂର୍ବ ଟି' ପାନ, ଚର୍ବ୍ୟ ଚୋଷ୍ୟ ଲେହ୍ୟ ଭୋଜନ ଏବଂ ସର୍ବୋପରି ଅନୁକ୍ଷଣ ଏଇ ଅନିନ୍ଦ୍ୟ ସୁନ୍ଦର ମୁଖ ଅବଲୋକନ ଓ ବଚନାମୃତ ପାନ କରିବାର ସୌଭାଗ୍ୟକୁ ଛାଡ଼ି ଯିବାକୁ ମୁଁ ଟିକିଏ ବି ଚାହୁଁ ନାହିଁ । ମତେ ଯଦି ସବୁଦିନ ଏଇ ସୌଭାଗ୍ୟ ମିଳନ୍ତା ନା ମୁଁ ସ୍ୱର୍ଗକୁ ବି ଯାଆନ୍ତି ନି ।"

ସୁଜାତା କହି ଉଠିଲେ, ଆଉ "ଆଉ । ମୁଁ ପରି କହିଲି, ଆପଣଙ୍କ ସାହିତ୍ୟ ଜ୍ଞାନ ସମ୍ପର୍କରେ ମୋର ପୂର୍ବଧାରଣା ହୋଇଗଲାଣି ।"

"ନା'ମ, ମୁଁ ସତ କହୁଛି, ମତେ ଭୁଲ୍ ବୁଝିବ ନାହିଁ । ମୁଁ ପ୍ରକୃତରେ ଏ ସୌଭାଗ୍ୟ ପାଇଁ ଅମିତାଭ ବାବୁଙ୍କୁ ଈର୍ଷା କରେ ।"

ଜୟନ୍ତଙ୍କର ପ୍ରତ୍ୟେକଟି କଥା ସୁଜାତାଙ୍କୁ ବହୁତ ଭଲ ଲାଗୁଥିଲା । ଜୟନ୍ତଙ୍କ ପ୍ରତି ସେ ଏକ ଅପୂର୍ବ ମଧୁର କଟାକ୍ଷପାତ କଲେ । ସେ କଟାକ୍ଷ ଜୟନ୍ତଙ୍କୁ ମୁଗ୍ଧ କଲା । ସେ କଟାକ୍ଷରେ ଥିଲା ମିଛ ରାଗ, ପ୍ରଚ୍ଛନ୍ନ ପ୍ରସନ୍ନତା, ମଧୁର ଲଜ୍ଜା ।

ସେଦିନ ପାଇଁ ପ୍ରୋଗ୍ରାମ ସ୍ଥିର ହେଲା ।

ସନ୍ଧ୍ୟାବେଳ ଯାଏ ସେମାନେ ଗପ କରିବେ । ଜୟନ୍ତଙ୍କ ଭାଷାରେ ସେ ଖାଲି ସୁଜାତାଙ୍କୁ ଦେଖିବେ, ମନଭରି ଦେଖିବେ । ସନ୍ଧ୍ୟା ବେଳକୁ ହାଣ୍ଡ୍ ଲୁମ୍ ଏକ୍‌ଜିବିସନ୍‌କୁ ଯିବେ । ସେଠାରୁ ଫେରି ସେକେଣ୍ଡ ସୋ ସିନେମା ।

ମଧ୍ୟାହ୍ନ ଭୋଜନ ପରେ ।

ସେମାନେ ଡ୍ରଇଂ ରୁମରେ ବସି ବିଶ୍ରମ୍ଭାଳାପ କରୁଥିଲେ ।

ସୁଜାତାଙ୍କ ହାତରେ ଉଲ୍ ଓ କଣ୍ଟା ।

ଜୟନ୍ତଙ୍କ ହାତରେ ଖବର କାଗଜ ।

ଜୟନ୍ତ ମଝିରେ ମଝିରେ ସୁଜାତାଙ୍କୁ ଚାହୁଁଥିଲେ, ଦେଖୁଥିଲେ ।

ଗରମ ଯୋଗୁଁ ସୁଜାତା ପିନ୍ଧିଥିଲେ ଖଣ୍ଡେ ଧଳା ପତଳା ଶାଢ଼ୀ ଓ ହାତ କଟା ଧଳା ବ୍ଲାଉଜ ।

ଏଇ ଅର୍ଦ୍ଧ ଅନାବୃତ ଦେହର ଶ୍ରୀ ଜୟନ୍ତଙ୍କୁ ସମ୍ମୋହିତ କରୁଥିଲା ।

ହଠାତ୍ ଉଲ୍ ପେଣ୍ଡୁଲାଟି ସୁଜାତାଙ୍କ ହାତରୁ ଖସି ପଡ଼ିଲା । ସୁଜାତା ସେଇଟିକୁ ଉଠାଇ ନେବାକୁ ନଇଁ ପଡ଼ିଲେ । ସେଇ ଅବସ୍ଥାରେ ଜୟନ୍ତ ଲୁବ୍ଧ

ଆଖିରେ ଦେଖିନେଲେ ସୁଜାତାଙ୍କ ଦେହଶ୍ରୀଓ ଏକ ଅନବଦ୍ୟ କଳା ।

ତାଙ୍କର ମନେ ପଡ଼ିଲା । ପୂର୍ବଦିନ କାର୍‌ରେ ଆସିବା ବେଳେ ହଠାତ୍ ଏକ ଝଣ୍ଟିଂରେ ତାଙ୍କର ବାହୁ ସୁଜାତାଙ୍କ ଉନ୍ନତ ବକ୍ଷୋଜକୁ ସ୍ପର୍ଶ କରି ପକେଇ ଥିଲା । ବିଦ୍ୟୁତ୍ ଗତିରେ ଆସିଥିବା ଏକ ଶିହରଣ ଉପଲବ୍‌ଧି କରିବା ପରେ ତାଙ୍କର ସନ୍ଦେହ ହୋଇଥିଲା ସ୍ୱାଭାବିକ ଭାବରେ ସେ ସେଇ ସ୍ପର୍ଶ ପାଇଥିଲେ ନା ଇଚ୍ଛାକରି ସେଇ ସୁଯୋଗରେ ସୁଜାତାଙ୍କ ଦେହକୁ ବାହୁରେ ଆଘାତ କରିଥିଲେ ।

ସୁଜାତାଙ୍କୁ ସ୍ପର୍ଶ କରିବାକୁ ଜୟନ୍ତଙ୍କର ଇଚ୍ଛାହେଲା । ସେ କହିଲେ, "ଆଚ୍ଛା ଦେଖି ଆପଣଙ୍କର ହାତ ।"

"ମୋ ହାତ ? ଆପଣଙ୍କୁ ହାତ ଦେଖି ଆସେ ନା କଣ ?'

"ଟିକିଏ ଟିକିଏ ।"

ସୁଜାତା ଉଲ୍ କଣ୍ଟା ରଖିଦେଇ ହାତ ବଢ଼ାଇଲେ । ଜୟନ୍ତ ତାଙ୍କର ହାତ ପାପୁଲିକୁ ଧରିଲେ । ସେ ପାପୁଲି ଥିଲା ପଦ୍ମ ପାଖୁଡ଼ା ପରି କୋମଳ ଓ ଈଷତ୍ ଲାଲ ।

ଜୟନ୍ତଙ୍କର ଭାରି ଇଚ୍ଛା ହେଉଥିଲା, ସେଇ ପାପୁଲି ଉପରେ ଗୋଟିଏ ଚୁମ୍ବନ ଦେବେ । କିନ୍ତୁ ସେ ନିଜକୁ ସମ୍ବରଣ କରି ନେଲେ । ସୁଜାତାଙ୍କର ଦୁଇ ହାତ ପାପୁଲିକୁ ନିଜର ଦୁଇ ହାତରେ ଧରି ସେ ତା ଉପରେ ଟିକିଏ ଚାପ ଦେଲେ ।
"କହନ୍ତୁ କଣ ଦେଖିଲେ ?"

"ହୁଁ ।" ଜୟନ୍ତ ସାବଧାନତାର ସହିତ ନିରୀକ୍ଷଣ କରୁଥିବାର ଛଳନା କଲେ ।

"କହନ୍ତୁ ନା, କଣ ସବୁ ଦେଖୁଛନ୍ତି ।"

"ଦେଖୁଛି ଏକ ଚମତ୍କାର ହାତ ।"

"ଚମତ୍କାର ମାନେ ?"

"ମାନେ ଅପୂର୍ବ ।"

"ଆପଣ ଏଇ ଦୁଇଦିନ ଭିତରେ ଅପୂର୍ବ ଶବ୍ଦଟାକୁ କେତେଥର ବ୍ୟବହାର କଲେଣି ?"

"ହଁ ବହୁତଥର ବ୍ୟବହାର କରଛୁ । କନ୍ତୁ ଗୋଟିଏ ଥର ବ ଅପବ୍ୟବହାର କର ନାହିଁ ?"

"କପର ଜାଣିଲେ ?"

"ଅପୂର୍ବଙ୍କୁ ଅପୂର୍ବ ନକହ୍ଲ ଆଉ କଛୁ କୁହାଯାଇ ପାରେନା ।"

"ହଉ, ଏବେ କହନ୍ତୁ, କ'ଣ ଦେଖିଲେ ।"

"କହ୍ଲ ପର । ଏପର ଚମତ୍କାର ହାତ ଆଉ କେବେ ଦେଖିନଥିଲ ।"

"ଚମତ୍କାର ମାନେ କଣ ?"

"ଚମତ୍କାର ମାନେ ?"

ଜୟନ୍ତ ଟିକଏ ଇତସ୍ତତଃ ହେଲେ । ମୁହୂର୍ତ୍ତିକ ପାଇଁ ଦ୍ୱିଧାବୋଧ କଲେ, ତାପରେ କହଲେ, "ଚମତ୍କାର ମାନେ ସୁନ୍ଦର, ପଦ୍ମଫୁଲପରି ସୁନ୍ଦର । ଏପର ସୁନ୍ଦର,କୋମଳ ହାତ ମୁଁ ଆଉ କେବେ ଦେଖିନାହିଁ । ଏଇପର ହାତ ଯାହାର ସେ ସୌଭାଗ୍ୟବତୀ, ଏଇହାତ ଯେ ଧରଚ ସେ ବଡ଼ ଭାଗ୍ୟବାନ୍ ।"

ସୁଜାତା ସବୁ ବୁଝିଗଲେ । ତଥାପି ନବୁଝି ପାରବା ଭଳି କହଲେ, 'ମୋର କଣ ସୌଭାଗ୍ୟ ଅଛୁ କହନ୍ତୁନା ।"

"ଫିସ୍ ପଡ଼ବ । ବନା ଫିସ୍‌ରେ ଆଉକଛୁ କହପାରବ ନାହିଁ ।"

"ବାଃରେ, ଫିସ୍ ମତେ ଦେବାକୁ ହେବ ! ଏମିତ ହାତ କେବେ ଦେଖି ନଥିଲେ, ଏବେ ଦେଖିଲେ । ତେଣୁ ଆପଣ ମତେ ଫିସ୍ ଦେବାକଥା କୁଆଡ଼େ ଗଲ !"

ଜୟନ୍ତ କହଲେ, "ଠିକ୍ କଥା, ମୋର ଦେବାକଥା, ମୁଁ ଦେଉଛୁ ।"

ଏବଂ ତାପରେ ସେ ବନା ଦ୍ୱିଧାରେ ସୁଜାତାଙ୍କର ସେଇ ନରମ ସୁନ୍ଦର ପଦ୍ମବର୍ଣ୍ଣୀ ହାତ ପାପୁଲକୁ ଚୁମ୍ବନ କଲେ । ଥରେ ନୁହେଁ, ବାରମ୍ବାର ।

ସୁଜାତା ହାତ ଟାଣିନେଲେ ନାହିଁ ।

ଜୟନ୍ତ ହାତକୁ ଛାଡ଼ଦେଲେ ନାହିଁ । କଛୁ ସମୟ ସେଇ ଅବସ୍ଥାରେ ରହବା ପରେ ସୁଜାତା ଧୀର ସ୍ୱରରେ କହଲେ, "ଏଥର ହାତ ଛାଡନ୍ତୁ ।" ଜୟନ୍ତ ନଜର ହାତ ମୁକ୍ତ କର ଦେଲେ । ସୁଜାତା ହାତ ଫେରାଇ ନେଲେ ଏବଂ କଛୁ ଘଟି ନଥିବା ପର ଉଲ୍‌ଧର ବୁଣିବାକୁ ଆରମ୍ଭ କଲେ ।

କେତେଗୁଡ଼ଏ ନୀରବ ମୁହୂର୍ତ୍ତିପରେ ସୁଜାତା ଜୟନ୍ତଙ୍କୁ ଗ୍ୱହିଁଲେ । ଜୟନ୍ତ ତାଙ୍କୁ ହିଁ ଗ୍ୱହିଛନ୍ତି ।

ସୁଜାତା କଣ ଲକ୍ଷ୍ୟ କରିପାରିଲେ ନାହିଁ ସେ ଗୃହାଣୀରେ ଫୁଟି ଉଠୁଥିବା ଲୋଭାତୁରତାକୁ ?

ସେ ପଗ୍ୱରିଲେ, "କ'ଣ ଦେଙ୍ଖୁଛନ୍ତି ?

"ଆପଣଙ୍କୁ ।"

"ମତେ କଣ ଦେଖୁଛନ୍ତି ?"

"ହିଁ ଦେଖୁଚ ଆପଣଙ୍କୁ । ଆଜି ଭାବୁଚି ଆପଣଙ୍କୁ ଗୋଟାଏ ଜିନଷ ମାଗିବ ।"

ସୁଜାତା ଟିକଏ ଚମକ ପଡ଼ିଲେ ।

"ମତେ ମାଗିବେ ? ମୁଁ କଣ ଦେଇପାରିବି ? ଆପଣଙ୍କର କଣ ଅଭାବ ଅଛି ?"

"ଅଭାବ ନାହିଁ ଯେ, ଦରକାର ଅଛି"

"କଣ କହନ୍ତୁ ।"

ଜୟନ୍ତ ଭାବିଲେ ଅନ୍ତରର ଗୋପନ କାମନାଟିକୁ ପ୍ରକାଶ କରି ଦେବେ କି ?

କିନ୍ତୁ ପ୍ରକାଶ କରି ପାରିଲେ ନାହିଁ । କହିଲେ, "ମୋ ପାଇଁ ସେମିତି ଗୋଟିଏ ସୁନ୍ଦର ସ୍ୱଏଟର କରିଦେବେ ?"

"ଓଃ, ଏଇକଥା । ମାଗି ମାଗି ଏଇୟା ମାଗିଲେ ।"

ସୁଜାତା ହସି ଉଠିଲେ ।

ସନ୍ଧ୍ୟାବେଳକୁ ସେମାନେ ଏକଜିବସନ୍‌କୁ ଗଲେ ।

ଏକଜିବସନ୍‌ରୁ ସୁଜାତାଙ୍କପାଇଁ ଗୋଟିଏ ସୁନ୍ଦର ଓ ମୂଲ୍ୟବାନ ଶାଢ଼ୀ କିଣିଲେ ଜୟନ୍ତ । କାରଣ ସୁଜାତା ଓଡ଼ିଶୀ ହାଣ୍ଡଲୁମ୍ ଶାଢୀକୁ ଭଲ ପାଆନ୍ତି ।

"ମାମା ପାଇଁ କିଛି କିଣିଲେ ନାହିଁ ଯେ" !

"ମାମାର ରୁଚ ଠିକଏ ନମ୍ବୁରର । ତାର ପ୍ରିଣ୍ଟ ଶାଢ଼ୀ ଦରକାର ।"

ଜୟନ୍ତଙ୍କ କଥା ସୁଜାତାଙ୍କୁ ପୁଲକିତ କଲା ।

ଏକଜିବସନ୍‌ରୁ ଫେରି ସେମାନେ ସେକେଣ୍ଡ ସୋ ସିନେମାକୁ ଗଲେ ।

ସିନେମା ହଲ୍‌ର ଗ୍ରୟାନ୍ଧକାରରେ ଜୟନ୍ତ ସାରାକ୍ଷଣ ଧରିଥିଲେ ସୁଜାତା-ଙ୍କର ହାତ । ପାଖକୁ ପାଖ ଲାଗି ଘନିଷ୍ଠ ହୋଇ ବସିଥିଲେ ମଧ୍ୟ ।

ସିନେମାରୁ ଫେରିବା ବେଳକୁ ୧୨ଟା ବାଜି ଯାଇଥିଲା । ଜୟନ୍ତଙ୍କ ମନରେ ପ୍ରଚ୍ଛନ୍ନ କାମନା ପ୍ରକାଶ ପାଇଁ ପଥ ଖୋଜୁଥିଲା । ତାଙ୍କର ଗ୍ରୁଡ ଭିତରେ ଅଜସ୍ର କମ୍ପନ, ଉମୁଳ ଆଲୋଡ଼ନ ।

ସିଡ଼ି ଉପରକୁ ଉଠିବାବେଳେ ସେ ସୁଜାତାଙ୍କୁ ଗ୍ରୁଡ ଉପରକୁ ଟାଣି ଆଣିଲେ ।

ସୁଜାତା ବାଧା ଦେଲେନାହିଁ ।

ଜୟନ୍ତ ସୁଜାତାଙ୍କ ଅଧରକୁ ଅଧରରେ ସ୍ପର୍ଶକଲେ । ସୁଜାତା ବାଧା ଦେଲେନାହିଁ ।

ଜୟନ୍ତ ସୁଜାତାଙ୍କୁ ବାରମ୍ବାର ଚୁମ୍ବନ କଲେ ।

କିଛିକ୍ଷଣ ପରେ ସୁଜାତା ନିଜକୁ ମୁକ୍ତ କରିନେଲେ । ସେମାନେ ନିଜ ନିଜର ରୁମ୍‌କୁ ଯାଇ ପୋଷାକ ପରିବର୍ତ୍ତନ କଲେ ।

ପୁଣି ଦେଖାହେଲା ।

ସୁଜାତା କହିଲେ, "ବହୁତ ରାତି ହେଲାଣି । ଶୋଇ ପଡନ୍ତୁ । କାଲି ୫ଟା ବସ୍‌କୁ ଆପଣଙ୍କର ଯିବା କଥା ପରା ।"

"ନା, ଆଜି ଆଉ ଶୋଇବା ନାହିଁ । ମୁଁ ଆପଣଙ୍କୁ ଆଉ ଶୋଇବାକୁ ଦେବିନାହିଁ । ଯିବା ପର୍ଯ୍ୟନ୍ତ ଆଜି ଖାଲି ଗପ କରିବା । ମୁଁ ଯିବା ପରେ ଆପଣ ଯେତେ ଶୋଇବେ ଶୁଅନ୍ତୁ ।"

ସେମାନେ ଯାଇ ବାଲ୍‌କୋନିରେ ବସିଲେ ।

ବାହାରେ ଅନ୍ଧକାର ।

ନିକଟସ୍ଥ ବେଡ୍‌ରୁମ୍‌ର ସ୍ମିମିତ ଆଲୋକରେ ସେମାନେ ପରସ୍ପରକୁ ସାମାନ୍ୟ ଦେଖିପାରୁଥିଲେ ।

ସେମାନେ ପାଖାପାଖି ବସିଥିଲେ ।

ଜୟନ୍ତ ଆହୁରି ନିକଟତର ହେବାର କାମନାରେ ଛଟପଟ ହେଉଥିଲେ । ଆସିବାବେଳେ ସେ ଲକ୍ଷ୍ୟକରିଛନ୍ତି ସୁଜାତାଙ୍କ ଦେହରେ ଧଳା ପତଳା ନାଇଟିଟି ବ୍ୟତୀତ ଆଉ କିଛି ନଥିଲା ।

ସେଇ ଆବରଣର ବ୍ୟୁହଭିତରୁ ପୁଷ୍ପଟି ମୁକ୍ତକରି ତାଙ୍କୁ ଦୁଇ ବାହୁରେ ତୋଳି ନେବାକୁ ସେ ଅସ୍ଥିର ହୋଇ ଉଠୁଥିଲେ । ତା ପରବର୍ତ୍ତୀ ଦୃଶ୍ୟ ଏତେ ସୁନ୍ଦର ଯେ ସେ ତାର କଳ୍ପନା କରି ପାରୁନଥିଲେ ।

ଆଉ ସୁଜାତା ।

ତାଙ୍କର ବାହାରେ ଥିଲା ଏକ ନିସ୍ତରଙ୍ଗ ସାଗରର ସ୍ଥିରତା । କିନ୍ତୁ ତାଙ୍କ ଭିତରେ ପାହାଡ଼ ପରି ଅସଂଖ୍ୟ ଉତ୍ତାଳ ଢେଉ ଖେଳି ବୁଲୁଥିଲା ।

ସେମାନେ ନୀରବରେ ଅଳ୍ପ କିଛି ସମୟ ବସିଲେ । କିନ୍ତୁ ଉଭୟେ ମନେ କରୁଥିଲେ ଯେପରି ବହୁତ ସମୟ ଧରି ସେମାନେ କଥାବାର୍ତ୍ତା ନକରି ଚୁପ୍ ଚାପ୍ ବସିଛନ୍ତି ।

ପରମ ବାଞ୍ଛିତ ଲଗ୍ନରେ ପହଞ୍ଚିବାକୁ ଆଉ କେତୋଟି ମୂହୂର୍ତ୍ତ ମାତ୍ର ଅତିକ୍ରମ କରିବାକୁ ହେବ । କିନ୍ତୁ ଗୌରୀଶଙ୍କରର ଶିଖର ଦେଶର ଶେଷ କେତୋଟି ମିଟର୍ ପରି ସେଇତକ ପଥ ଥିଲା ଖୁବ୍ ଦୂର ଓ ଦୁରଧିଗମ୍ୟ ।

ସୁଜାତା ନୀରବତା ଭଙ୍ଗ କରି ପ୍ରଶ୍ନକଲେ ।

"ଆଚ୍ଛା ସତ କହିବେ, ମାମି କିପରି ସ୍ତ୍ରୀ ? ଆପଣ ତାଙ୍କୁ ପାଇ ସୁଖୀ ହୋଇଛନ୍ତି ?",

ଏପରି ଏକ ପ୍ରଶ୍ନ ପାଇଁ ଜୟନ୍ତ ଆଦୌ ପ୍ରସ୍ତୁତ ନଥିଲେ । ଏଇମିତି ପ୍ରଶ୍ନ ତାଙ୍କ ମନରେ ଆଗରୁ ଥରେ ଅଧେ ଆସିଚି । ଏବଂ ସେତେବେଳେ ସେ ନିଜକୁ ଯାହା ଉତ୍ତର ଦେଇଛନ୍ତି ସେଇ ଉତ୍ତରଟାକୁ ପୁନରାବୃତ୍ତି କରି କହିଲେ, "ମାମି ହେଉଛି ସୀତା ସାବିତ୍ରୀ ଦଳର ସ୍ତ୍ରୀ । ସେପରି ସ୍ତ୍ରୀ ପାଇଲେ ଜଣେ ସୁଖୀ ହେବାକୁ ବାଧ୍ୟ ।"

ହଠାତ୍ ଅନେକ ଆଲୋକ ନିଭିଗଲା ।

କେଉଁଠି ଯେପରି ଫିଉଜ୍ କଟିଗଲା ।

ସୁଜାତା ଉଠୁ ଉଠୁ କହିଲେ, "ବହୁତ ରାତି ହେଲାଣି । ଯାଆନ୍ତୁ, ଶୋଇ ପଡ଼ିବେ –"

ଜୟନ୍ତ ଆତ୍ମସ୍ଥ ହୋଇ ତାଙ୍କୁ ଅଟକେଇବା ପୂର୍ବରୁ ସେ ଚାଲିଯାଇଥିଲେ ।

ଜୟନ୍ତ ଡାକିଲେ, "ସୁଜାତା, ସୁଜାତା" । ସେ ଡାକ ଶୁଣିବା ଆଗରୁ ଶୋଇବା ଘରର କବାଟ ବନ୍ଦ କରି ସାରିଥିଲେ ସୁଜାତା ।

୧୯ । ୬ । ୭୭

ଭୁବନେଶ୍ୱର 

# ପୁନଶ୍ଚ ମନୋରମା

ଦୀର୍ଘ ୨୭ବର୍ଷ ପରେ ଅପ୍ରତ୍ୟାଶିତ ଭାବରେ ଗୋପାଳ ସହିତ ଦେଖା ହେଲା ।

ପିଅନ୍ ସ୍ଲିପ୍ ଦେଇଯାଇଥିଲା । ମୁଁ କିନ୍ତୁ ଆଶା କରି ନଥିଲି ଆଗନ୍ତୁକ ଗୋପାଳ ପଟ୍ଟନାୟକ ମୋର ଅତି ପରିଚିତ, ମୋର ଏକଦା କଲେଜ ଜୀବନର ଅନ୍ତରଙ୍ଗ ବନ୍ଧୁ ।

ବ୍ୟାଙ୍କର ମ୍ୟାନେଜର୍ ଭାବରେ ସାରା ଭାରତର ଅନେକ ଜାଗା ବୁଲି ବୁଲି ଓଡ଼ିଶାକୁ ଫେରି ଆସି ଭୁବନେଶ୍ୱରରେ ଯୋଗ ଦେବାର ମାସେ ଦୁଇମାସ ମାତ୍ର ଯାଇଥାଏ । ଏହା ଭିତରେ ଅନେକ ପୁରୁଣା ସହପାଠୀ ବନ୍ଧୁଙ୍କ ସହିତ ଦେଖା ବି ହୋଇଥାଏ । ସେମାନଙ୍କ ଭିତରୁ କାହାକୁ ମୁଁ ଚିହ୍ନିପାରିଛି ତ ସେମାନଙ୍କ ଭିତରୁ କିଏ ମତେ ଚିହ୍ନିପାରିଛି । କିନ୍ତୁ ପ୍ରକୃତ ଅନ୍ତରଙ୍ଗ ବନ୍ଧୁ ଯେଉଁମାନେ ଥିଲେ ସେମାନଙ୍କ ଭିତରୁ କାହା ସହିତ ଦେଖା ହୋଇ ନଥାଏ ।

ଚ୍ୟାମ୍ବର ଭିତରକୁ ଚିରପରିଚିତ ଷ୍ଟାଇଲରେ ପଦକ୍ଷେପଣ କରୁ କରୁ ଭଦ୍ରବ୍ୟକ୍ତିଟି ପଶି ଆସିଲେ ଏବଂ ମୋ ଆଡକୁ କରମର୍ଦ୍ଦନ ଉଦ୍ଦେଶ୍ୟରେ ହସ୍ତ ପ୍ରସାରିତ କରି ନେଇ ନେଇ କହିଲେ, 'ଶିଶିର ତ !'

ହାତରେ ହାତ ବନ୍ଧ ହୋଇ ରହିଗଲା ମୁହୂର୍ତ୍ତିକ ପାଇଁ ।

ତାପରେ କଲବୋଲ ସହିତ ଉଭୟେ ଉଭୟଙ୍କୁ କୁଣ୍ଢେଇ ପକେଇଲୁ ।

୨୭ବର୍ଷ ତଳର ପରିଚୟ ଓ ବନ୍ଧୁତା । ଏଇ ଦୀର୍ଘ କାଳ ଭିତରେ କେତେ ଯେ କଣ ଘଟିଯାଇଛି ତାର ହିସାବ କିଏ ରଖିଛି ।

ତେଣୁ ପରସ୍ପରର ଅନେକ ପ୍ରଶ୍ନ, ଅନେକ ଜିଜ୍ଞାସା ।

ଗୋପାଳ ଜାଣିଲା, ମୁଁ ପ୍ରାୟ ସମଗ୍ର ଉତ୍ତର ଭାରତ ବୁଲି ବୁଲି ଏବେ ଓଡ଼ିଶାକୁ ଆସିଛି । ମୋର ଦୁଇପୁଅଙ୍କ ଭିତରୁ ବଡଟି ଦିଲ୍ଲୀରେ ପୋଷ୍ଟ ଗ୍ରାଜୁଏସନ୍ କରୁଛି । ସାନଟି ବି,ଏ ପଢ଼ୁଛି । ଦୁଇଝିଅଙ୍କ ଭିତରୁ ବଡଟି ବି,ଏ ପଢିବାବେଳେ ହିଁ ବାହାହୋଇଯାଇଛି । ଜ୍ଵାଇଁ ଡାକ୍ତର । ଦୁହେଁଯାକ ବର୍ତ୍ତମାନ ଷ୍ଟେଟସ୍‌ରେ ଅଛନ୍ତି । ସାନଟି ମାଟ୍ରିକ୍ ପଢୁଛି ଇତ୍ୟାଦି ।

ମୁଁ ଜାଣିଲି ଗୋପାଳ ବର୍ତ୍ତମାନ ଅର୍ଥ ବିଭାଗରେ ଡେ଼ପୁଟି ସେକ୍ରେଟାରୀ ଅଛି । ତାର ୪ଟି ଝିଅ ଓ ଗୋଟିଏ ପୁଅ । ପୁଅଟି ସବା ସାନ । ବୟସ ମାତ୍ର ସାତବର୍ଷ । ଝିଅମାନେ ସବୁ ପଢ଼ୁଛନ୍ତି । ବଡ଼ଝିଅ ପାଇଁ ବାହାଘର ପ୍ରସ୍ତାବ ପ୍ରାୟ ଠିକ୍ ହୋଇଯାଇଛି । ଆଗାମୀ ଫେବୃୟାରୀରେ ବାହାଘର ହୋଇପାରେ ଇତ୍ୟାଦି ।

ତାପରେ ଅନ୍ୟାନ୍ୟ ବନ୍ଧୁମାନଙ୍କ ସମ୍ପର୍କରେ ମୋର ପ୍ରଶ୍ନ ।

"ଆଚ୍ଛା, ଭକ୍ତ କେଉଁଠି ଜାଣିଚ ?"

"ଭକ୍ତ ପୁରୀରେ କମର୍ସିଆଲ ଟ୍ୟାକ୍ସ ଅଫିସର୍ ଅଛି । ସେଇଠି ଗୋଟାଏ ବଡ଼ କୋଠାଘର ତୋଳିଛି । ଭୁବନେଶ୍ୱରରେ ବି ଜାଗା ନେଇଛି ।"

"ବୈଦ୍ୟନାଥ ?"

"ବୈଦ୍ୟନାଥ ତା ଗାଁ ହାଇସ୍କୁଲରେ ଶିକ୍ଷକ ଅଛି । ସ୍କୁଲ ସେକ୍ରେଟେରୀଙ୍କ ସହିତ ତାର ବନିବନା ନାହିଁ । ତେଣୁ ହେଡ୍‌ମାଷ୍ଟର ହୋଇ ପାରୁନି ।"

'ବ୍ରଜ ?"

"କୋଉ ବ୍ରଜ ? ଜଣେ ତ ଥିଲା ବ୍ରଜ ମିଶ୍ର । ଫୁଟବଲ୍ ଖେଳୁଥିଲା । ସେ ବର୍ତ୍ତମାନ ଔଷଧ ଦୋକାନ କରିଛି । ଆଉ ଜଣେ ଥିଲା ବ୍ରଜ ମହାନ୍ତି । ହାଇ ପାୱାର ଚଷମା ଲଗାଉଥିଲା ବୋଲି ଆମେ ତାକୁ କଣା ବ୍ରଜ ବୋଲି କହୁଥିଲୁ । ସେ ଖୋର୍ଦ୍ଧାରେ ଆଡ୍‌ଭୋକେଟ୍ ଅଛି ।"

"ନା ମ ? ଆଉ ଜଣେ ବ୍ରଜ ନଥିଲା । ବ୍ରଜ ରାଉତରାୟ ।"

"ହଁ ଜାଣେ । ସେ କୋଅପରେଟିଭ୍ ଡ଼ିପାର୍ଟମେଣ୍ଟ୍‌ରେ ଆସିଷ୍ଟାଣ୍ଟ୍ ରେଜିଷ୍ଟ୍ରାର୍ ଥିଲା । କଣ ସବୁ ଭିଜିଲାନସ୍ କେଶ୍‌ରେ ପଡ଼ି ବର୍ଷକର ଚାକିରୀ ଖଣ୍ଡିକ ଯାଇଛି । ଗାଁରେ ରହୁଛି, ଜମିବାଡ଼ି କଥା ବୁଝୁଛି ।"

"ଆଉ ଅଜୟ ?"

"ଅଜୟ ଜଗଦ୍ଦେବ ତ ! ଯେ ମଜା ମଜା କଥା କହି ବହୁତ ହସାଉଥିଲା । ସେତ ଆଉ ନାହିଁ ।"

"ମାନେ ?"

"ତୁମେ ଜାଣିନା ? କାଲି ପରି ଲାଗୁଛି; ୪ । ୫ବର୍ଷ ହୋଇଗଲାଣି ।'

"କଣ ହୋଇଥିଲା ତାର ?" ମୁଁ ବ୍ୟଗ୍ର ହୋଇ ପଚାରିଲି ।

ଗୋଡ଼ରେ ଗୋଟାଏ କୁହାକଣ୍ଟା ମାଡ଼ି ପକାଇଥିଲା । କିଛି ଚିକିତ୍ସା କଲା ନାହିଁ । ୮ । ୧୦ଦିନ ପରେ ଟିଟାନସ୍ ହୋଇଗଲା ।"

ମୁଁ ଆଉ କିଛି ପଚାରି ପାରିଲି ନାହିଁ । କିଛି ସମୟ ନୀରବରେ ବିତିଗଲା ପରେ ଗୋପାଳ ପୁଣି କଥା ଆରମ୍ଭ କଲା ।

"ଆଉ ଝିଅମାନଙ୍କ କଥା କିଛି ମନେ ନାହିଁ ?"

"ଅଛି । ତୁମେ ଜାଣିଚ ସେମାନଙ୍କ କଥା ?" ମୁଁ ପଚାରିଲି ।

"କାହା କଥା ଜାଣିବାକୁ ଚାହୁଁଚ ?"

"ମନୋରମା ।"

"ମୁଁ ଜାଣେ, ତୁମେ ତା କଥାହିଁ ପଚାରିବ ।" ଗୋପାଳ କଥାର ମର୍ମାର୍ଥ ବୁଝି ପାରି ମୁଁ ଟିକିଏ ହସିଲି ।

"ମନୋରମା ଆଇ,ଏ ପାଶ୍ କରି ପୁରୀ କଲେକ୍ଟରଏଟ୍‌ରେ କିରାଣୀ ଚାକିରୀ କରିଥିଲା । ସେଇଠି ଜଣେ ଡେପୁଟି କଲେକ୍ଟର ତା ପ୍ରେମରେ ପଡ଼ିଗଲେ । ତାଙ୍କୁ ହିଁ ସେ ବାହାହେଲା । ଚାକିରୀ ଛାଡ଼ି ଦେଇ ଗୃହିଣୀ ବନିଗଲା । ଏବେ ପୁଅ ଝିଅଙ୍କ ମା ହୋଇ ଘର ସଂସାର କରୁଚି । ଏଇ ଭୁବନେଶ୍ୱରରେ ତ ଅଛି ।"

"ଭୁବନେଶ୍ୱରରେ ଅଛି ?" ଏଇ ସମ୍ବାଦଟା ମତେ ବହୁତ ଉଲ୍ଲସିତ କଲା ।

"ହଁ, ଏଇ ଭୁବନେଶ୍ୱରରେ ଅଛି । ତା ସହିତ ମୋର ବହୁତ ସମୟରେ ଦେଖାହୁଏ । ତୁମେ ଦେଖା କରିବ ?"

"କୋଉଠି ରହୁଚ ସିଏ ?"

"ଦେଖା କରିବାକୁ ଚାହୁଁଚ ତ ?"

"ଦେଖା କରିବାକୁ ଚାହିଁଲେ କଣ ଦେଖା ହୋଇଯିବ ? ଦେଖା ହେଲେ ସେ ଚହ୍ନିବ କି ନାହିଁ କେଜାଣି । ତା ଛଡା ତା ସ୍ୱାମୀ କଣ ଭାବିବେ ।"

"କିଛି ଭାବିବେ ନାହିଁ । ତୁମେ ଦେଖା କରିବାକୁ ଚାହୁଁଚ ତ ?"

ମୁଁ କହିଲି, "ନିଶ୍ଚୟ ।'

"ତାହା ହେଲେ ଦେଖା ହେବ । ଗୋଟାଏ ଦିନ ସ୍ଥିର କର ମୁଁ ତୁମକୁ ନେଇଯିବି । ସେ ତୁମକୁ ଚହ୍ନି ନପାରିବାର ଭୟ ନାହିଁ ।"

"କାହିଁକି ?"

"ଯେଉଁଥି ପାଇଁ ତୁମେ ତାକୁ ଭୁଲି ନା, ସେଥିପାଇଁ ସେ ବି ତୁମକୁ ଭୁଲି ନାହିଁ ।"

"ସେ ଭୁଲି ନାହିଁ ବୋଲି କପରି ଜାଣିଲ ?"

"ମୁଁ ଜାଣେ, ସେ ତୁମକୁ ମନେରଖିଚି । ତୁମ କଥା ବେଳେ ବେଳେ କହେ । ମୋର ତା ସହିତ ଦେଖା ହୁଏ ତ ।"

ଗୋପାଳର କଥା ଶୁଣିବାକୁ ମିଠା ଲାଗୁଥିଲା । ମୁଁ ପୁଣିହସିଲି । ପଚାରିଲି, "ମୋ କଥା କଣ କହେ ?"

"ପ୍ରଥମେ ତା ସହିତ ଦେଖା ହେଉ ।'

"ଆଚ୍ଛା, ଆଉ କାହା ସହିତ ଦେଖା ହୁଏ ?"

ଆଉ ପ୍ରାୟ ସମସ୍ତେ ବାହାସାହା ହୋଇ କଏ କୁଆଡେ ଘର କଲେଣି । ମନୋରମା କହୁଥିଲା, ତା ପାଖକୁ ବେଳେ ବେଳେ ଶୀଳାରାୟ ଚିଠି ଦିଏ । ଶୀଳାରାୟ ମନେପଡୁଛି ତ ? ଇଂରାଜୀ ଅଧ୍ୟାପକ ଶଙ୍କର ରାୟଙ୍କ ଝିଅ ।"

"କେଉଁଠି ଅଛି ସେ ?"

" ସେ ବିଶ୍ୱଭାରତୀରେ ଅଧ୍ୟାପିକା ଅଛି ।"

ଏହି ଅବସରରେ ଟେବୁଲ୍ ଉପରେ ବହୁତ ଫାଇଲ୍ ଆସି ଗଦା ହୋଇ ଯାଇଥିଲା । ଗୋପାଳ କହିଲା, "ଆଜି ଏତିକି ଥାଉ । ପୁଣି ଦେଖା ହେଲେ ଅନ୍ୟ ମାନଙ୍କ କଥା ପକେଇବା । ମନୋରମା ଘରକୁ କେବେ ଯିବା ?"

ମୁଁ କହିଲି, "ଗୋଟାଏ ଦିନ ସ୍ଥିର କର । ବିଳମ୍ବେନ ଅଲମ୍ ।"

"ଆଗାମୀ ରବିବାର ?"

ମୁଁ ସମ୍ମତି ଜଣାଇଲି ।

ଠିକ୍ ହେଲା, ଗୋପାଳ ଆସି ମୋତେ ସାଙ୍ଗରେ ନେଇଯିବ ।

+ + ×

ମୋର ବର୍ତ୍ତମାନ ବୟସ ୫୦ ବର୍ଷ ।

ମୋର ନାତିକୁ ଦୁଇବର୍ଷ ହେଲାଣି ।

ମୋର କାନ ପାଖର ବାଳସବୁ ପାଚିଗଲାଣି ।

ବେଳେ ବେଳେ ଛାତି ଭିତରେ ଯନ୍ତ୍ରଣା ହେଉଥିବାରୁ ମୁଁ ହାର୍ଟ ଡିଜିଜ୍ ବୋଲି ସନ୍ଦେହ କରୁଛି ।

ମୁଁ ସ୍ୱାମୀ ଶିବାନନ୍ଦଙ୍କ ଠାରୁ ଦୀକ୍ଷାଗ୍ରହଣ କରି ସଂସାରର ମାୟା ମୋହରୁ ମୁକ୍ତି ପାଇବାକୁ ସାଧନା କରୁଛି ।

ତଥାପି ସେଇ ଆଗାମୀ ରବିବାର ଯେତିକି ନିକଟତର ହେଉଥିଲା, ମୋର ହୃଦୟ ସେତିକି ବେଶୀ ବେଶୀ ଆବେଗରେ କଲ୍ଲୋଳିତ ହେଉଥିଲା । ୨୭ ବର୍ଷ ତଳର ଦିନଗୁଡ଼ିକର ବିବର୍ଣ୍ଣ ସ୍ମୃତି ମନଭିତରକୁ ବାରମ୍ବାର ଆସୁଥିଲା । ଏପରି କି ଶନିବାର ରାତିରେ ମୁଁ ମନୋରମା ଘରକୁ ଯାଇଥିବାର ସ୍ୱପ୍ନ ବି ଦେଖିଲି ।

ରବିବାର ଦିନ ୫ଟା ବେଳକୁ ଗୋପାଳ ଆସି ମତେ ତା କାର୍‌ରେ ନେଇଗଲା ।

ପ୍ରଥମେ ତା'ର ଘରକୁ ଯାଇ ଚା' ପାନ ଶେଷ କରି ମନୋରମା ଘରକୁ ଯିବାକଥା ଆଗରୁ ସ୍ଥିରୀକୃତ ହୋଇଥିଲା । ମୋର ଇଚ୍ଛା ହେଉଥିଲା ପ୍ରସ୍ତାବରେ ଟିକିଏ ଏପଟ ସେପଟ କରି ଦେବାକୁ । ଅର୍ଥାତ୍ ପ୍ରଥମେ ମନୋରମା ଘରକୁ ଯାଇ

ଫେରିବା ବେଳେ ଗୋପାଳ ଘରକୁ ଯିବାକୁ । କିନ୍ତୁ ଗୋପାଳ ପାଖରେ ସେ ପ୍ରସ୍ତାବ ଉପସ୍ଥାପିତ କରି ପାରିଲି ନାହିଁ ।

ଗୋପାଳର ସୁନ୍ଦର ସରକାରୀ ବଙ୍ଗଳା ।

ଗୋପାଳ ମତେ ଡ୍ରଇଂରୁମ୍ ଭିତରେ ବସାଇ ଦେଇ ଭିତରକୁ ଗଲା ।

ତା ପରେ ପରେ ତାର ପୁଅ ଝିଅ ମାନେ ଆସି ମତେ ନମସ୍କାର କଲେ । ମୁଁ ସେମାନଙ୍କର ନାମ ପଚାରିଲି । ତାଙ୍କ ନାମ କଣ ବୋଲି ପ୍ରଶ୍ନ କଲି । କିଏ କଣ ପଢୁଛ ବୋଲି ଜିଜ୍ଞାସା କଲି । ବଡ଼ ଝିଅକୁ କଲେଜରେ 'କେଉଁ, ସବ୍‌ଜେକ୍ଟ୍ ଭଲ ଲାଗୁଛି,' ସାନ ଝିଅକୁ 'ଅଙ୍କରେ କେତେ ନମ୍ବର ରଖିଲ' ଏପରି ନାନା ପ୍ରକାର ଅନାବଶ୍ୟକ ପ୍ରଶ୍ନ ପଚାରିଲି, ପୁଅକୁ ଟିକିଏ ଆଦର କଲି ।

କିନ୍ତୁ ପ୍ରକୃତରେ ଏସବୁରେ ମୋର ଆଗ୍ରହ ବା ଆନ୍ତରିକତା ନଥିଲା । ଅଦୂରବର୍ତ୍ତୀ ସେଇ ଇପ୍‌ସିତ ମୁହୂର୍ତ୍ତଟିର ପ୍ରବଳ ଆକର୍ଷଣ ଲାଗି ମତେ ଯାହା ଅନ୍ୟ ଅବସ୍ଥାରେ ବହୁତ ଭଲ ଲାଗିଥାନ୍ତା ଏଇ ମୁହୂର୍ତ୍ତରେ ତାହା ସବୁ ଭଲ ଲାଗୁ ନଥିଲା ।

ପିଲାମାନେ ଚାଲିଗଲେ ।

ଗୋପାଳ ଫେରିଆସି ସୋଫାରେ ମୋ ପାଖରେ ବସିଲା । କହିଲା, "ଶ୍ରୀମତୀ ବାଥ୍‌ରୁମ୍‌ରେ । ଏକାଥରକେ ଚା' ଫା ନେଇ ଆସିବେ । ତେଣୁ ଟିକିଏ ଅପେକ୍ଷା କର ।"

"ଆମର ତେଣେ ଯିବା ଡେରି ହେବ ନାହିଁ ତ ?"

ଗୋପାଳ ହସିଲା । କହିଲା, 'ନା ବନ୍ଧୁ, ମିଳନ ମୁହୂର୍ତ୍ତ ଗଡ଼ିଯିବ ନାହିଁ । ବ୍ୟସ୍ତ କାହିଁକି ?"

"ନା,ନା ମୁଁ ବ୍ୟସ୍ତ ନୁହେଁ ।"

ଗୋପାଳ କଥାର ମୋଡ଼ ବଦଳାଇ ହଠାତ୍ ପ୍ରଶ୍ନ କଲା, "ଆଚ୍ଛା ଶିଶିର, ମନୋରମାକୁ ତୁମେ ସତରେ ଭଲ ପାଉଥିଲ ?"

ମୁଁ କହିଲି, "ସତ ମିଛ ପ୍ରଶ୍ନ କାହିଁକି କରୁଚ ? ଗୋଟାଏ ସତ ଭଲ ପାଇବା ଓ ଗୋଟାଏ ମିଛ ଭଲ ପାଇବା ଅଛି କି ?"

"ନାଁ । ତୁମେ ଭଲ ପାଉଥିଲ ମୁଁ ଜାଣେ ଯେ । ପୁରୀ କଲେଜରେ ସେଇ ଦିନଗୁଡ଼ିକ ଏବେ ମଧ୍ୟ ମୋ ସ୍ମୃତିରେ ଅମଳିନ ହୋଇ ରହିଛି ।"

"ମୋର ମଧ୍ୟ ।"

"ଆଚ୍ଛା ମନେପକାଇ କହିଲ, ତୁମର ମନୋରମା ସହିତ କିପରି ପ୍ରଥମେ ଆଲାପ ହେଲା ?"

ମୁଁ ମନେ ମନେ ସ୍ମୃତି ସ୍ମରଣ କଲି ।

ଆମର ସେତେବେଳେ ସକାଳୁଆ କଲେଜ ହେଉଥାଏ । ମନୋରମା ରହୁଥାଏ ହେଉ ଗୋହିରି ସାହିରେ । ମୁଁ ରହୁଥାଏ ନୂଆ ସାହିରେ । ଦଉଡ଼ିତୋଟା ସେତେବେଳେ ପ୍ରକୃତରେ ତୋଟା ହିଁ ଥିଲା । ଘରଦ୍ୱାର କିଛି ନଥିଲା । ସେଇ ତୋଟା ଭିତର ଦେଇ ଆମେମାନେ କଲେଜକୁ ଯିବା ଆସିବା କରୁ । ମଝିରେ ମୁଁ ଇଚ୍ଛାକରି ମନୋରମାର ପଛେ ପଛେ ଆସେ । ମନୋରମା ସହିତ ଅନେକ ସମୟରେ ତା ସଙ୍ଗିନୀ ମାନେ ଥାଆନ୍ତି । ବେଳେ ବେଳେ ସେ ଏକା ବି ଆସେ । ମୁଁ ଏବଂ ମୋର ବନ୍ଧୁମାନେ-ଯେଉଁ ମାନଙ୍କ ଭିତରେ ଏଇ ଗୋପାଳ ବି ଅନେକ ସମୟରେ ଆଏ-ଗପ କରି କରି ଆସୁ । ଆମେ କଥା କହୁଥାଉ-ନାଁ, ଅନ୍ୟମାନଙ୍କ କଥା କାହିଁକି କହିବି, ନିଜ କଥାହିଁ କହେ । ମୁଁ କଥା କହୁଥାଏ ପାଟିକରି, ଯେପରି ତାହା ମନୋରମାକୁ ଶୁଣାଯିବ ।

କଣ ସେ କଥା ?

କେଉଁ ସାରଙ୍କ ଟିଚିଂ ମେଥଡ୍ ଉପରେ ଲଘୁ କମେଣ୍ଟ ତ କେଉଁ ସିନେମା ଉପରେ ଆଲୋଚନା । କିମ୍ବା ସାହିତ୍ୟ ସମ୍ପର୍କରେ ଖିଆ ଖିଆ କଥା ।

ଏବେ ବି ମୋର ମନେଅଛି । ମୋର ପ୍ରତିଟି କଥାରେ, ଆଚରଣରେ ମନୋରମାର ଦୃଷ୍ଟି ଆକର୍ଷଣ କରିବା ପାଇଁ ମୁଁ ଏକ ଗଭୀର ଚେଷ୍ଟାହିଁ କରି ଚାଲିଥାଏ ।

ମୁଁ ପ୍ରଥମେ ଆଇ,ଏସ୍,ସିରେ ନାମ ଲେଖାଇଥିଲି । କିନ୍ତୁ ସାଇନ୍ସ ସହିତ ମୋର ସଦ୍‌ଭାବ ହୋଇପାରିଲା ନାହିଁ । ମୁଁ ସେତେବେଳକୁ କବିତା, ଗଳ୍ପ, ଏକାଙ୍କିକାର ଚନ୍ଦ୍ରବ୍ୟୂହ ରଚନା କରିବାରେ ଲାଗି ପଡ଼ିଥାଏ । ସେଇକି ବେଳେ ଲାଇବ୍ରେରୀରେ ପ୍ରଥମ ଦେଖା ମନୋରମା ସହିତ । ପ୍ରଥମ ଦେଖାରେହିଁ ମୁଁ ପ୍ରେମରେ ପଡ଼ିଗଲି । ନିପଟ ମଫସଲ ସ୍କୁଲରୁ ଆସିଥିବା ଗ୍ରୁଢ ମୁଁ । 'କଲେଜ ଗାର୍ଲ' ଶବ୍ଦ ଆଗରୁ ଜାଣିଥିଲି ଗଳ୍ପ ଉପନ୍ୟାସର ମାଧ୍ୟମରେ । କିନ୍ତୁ ବାସ୍ତବରେ କଲେଜଗାର୍ଲ ଦେଖିବା ମୋର ପ୍ରଥମ କଲେଜରେ ନାମ ଲେଖାଇବା ପରେ । ସେମାନଙ୍କୁ ମୁଁ ବିସ୍ମୟ ବିସ୍ଫାରିତ ନୟନରେ ଦେଖୁଥାଏ । ଲାଇବ୍ରେରୀରେ

ମନୋରମା ସହିତ ଦେଖା । ପ୍ରଥମ ଥର ପାଇଁ ତାର ଆଖି ସହିତ ମୋର ଆଖି ମିଳିଗଲା ସେଇଠି ଅକସ୍ମାତ୍ । ସେ ଆଖି ଫେରାଇନେଲା । ମୁଁ ସେଥିକରେ ବିହ୍ୱଳ ହୋଇ ଯାଇଥିଲି । ମୁଁ ତାକୁ ବାରମ୍ବାର ଚାହିଁଲି । କିନ୍ତୁ ସେ ଆଉ ମତେ ଫେରି ଚାହିଁଲା ନାହିଁ । ସେ ଲାଇବ୍ରେରୀରୁ ତାର କାର୍ଡ ନେଇ ଚାଲିଗଲା । ଲାଇବ୍ରେରୀଆନ୍‌ଙ୍କ ସହିତ ତାର କଥାବାର୍ତ୍ତାରୁ ଜାଣିଲି ତାର ନାଁ ମନୋରମା ମହାନ୍ତି । ପ୍ରଥମ ବାର୍ଷିକ କଳା ଶ୍ରେଣୀର ଛାତ୍ରୀ ସେ । ତାର ରୋଲ ନମ୍ବର ୧୦୮ ।

ତା ପରେ । ମୁଁ ବାରମ୍ବାର ତାର ନାମ ସ୍ମରଣ କଲି । ତାର ରୋଲ୍ ନମ୍ବରକୁ ମନେ ମନେ ଆବୃତ୍ତି କଲି । ତା ସହିତ ସେଇ ପ୍ରଥମ ଦୃଷ୍ଟି ବିନିମୟର ସ୍ମୃତିକୁ ଅତି ଯତ୍ନର ସହିତ ନିଭୃତ ଅନ୍ତର ଭିତରେ ଲାଳନ କଲି ।

ପ୍ରିନ୍ସିପାଲ୍‌ଙ୍କୁ ଅନୁରୋଧ କରି, ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଠାରୁ ଅନୁମତି ନେଇ ଏବଂ ମୋର ବାପାଙ୍କର ଉପଦେଶକୁ ଅଗ୍ରାହ୍ୟକରି ମୁଁ ସାଇନସ୍‌ରୁ ଆର୍ଟସ୍‌କୁ ବଦଳ କରିଦେଲି । ସେତେବେଳେ ମୋର ଯୁକ୍ତି ଥିଲା, ବିଜ୍ଞାନ ମୋ ପାଇଁ ଗୋଟାଏ ଶୁଷ୍କ ବିଦ୍ୟା । ସାହିତ୍ୟ ଓ କଳା ବିନା ମୋ ଜୀବନ ନିରର୍ଥକ ହୋଇଯିବ । ମୁଁ କଳାକାର ହେବ ମୁଁ ସ୍ରଷ୍ଟା ହେବ । ବୈଜ୍ଞାନିକ ହେବା ମୋର ଲକ୍ଷ୍ୟ ନୁହେଁ ।

କିନ୍ତୁ ଆଜି ଭାବୁଚି, ସେଇ ପରିବର୍ତ୍ତନ ପଛରେ କଣ ମନୋରମା ପ୍ରତି ମୋର ଆକର୍ଷଣ ଥିଲା କି ?

କ୍ଲାସରେ ଝିଅ ମାନେ ସାମନାରେ ଆଡ଼ୁଆ ହୋଇ ପଡ଼ିଥିବା ବେଞ୍ଚ ମାନଙ୍କରେ ବସନ୍ତି । ମୁଁ ଆଗ ଧାଡ଼ିରେ ବସେ ସେମାନଙ୍କୁ ସ୍ପଷ୍ଟ ଭାବରେ ଦେଖି ପାରିବା ଭଳି, ବିଶେଷ କରି ମନୋରମାକୁ ଦେଖି ପାରିବା ଭଳି । ସବୁ ଝିଅଙ୍କ ଭିତରେ ମନୋରମା ସୁନ୍ଦରୀ ଥିଲା । କିନ୍ତୁ ମୋର ସେତେବେଳେ ମନେ ହେଉଥିଲା, ତା ପରି ସୁନ୍ଦରୀ ଆଉ ବିଶ୍ୱବ୍ରହ୍ମାଣ୍ଡରେ ନାହାନ୍ତି ।

ମୁଁ ତା ସହିତ ଆଲାପ କରିବାକୁ ସୁଯୋଗ ଖୋଜୁଥାଏ ।

ସ୍ମୃତି ଚାରଣ ଶେଷ କରି ମୁଁ କହିଲି, "ଦିନେ କ୍ଲାସରେ ମୁଁ ଦେଖିଲି ମନୋରମା ପାଖରେ ଶରତ ଚାଟର୍ଜିଙ୍କର 'ପରିଣୀତା' ବହିଟି ଅଛି । ଭାବିଲି ତାକୁ ବହିଟା ମାଗିବି । ବହିଟା ମାଗିବା ଅବକାଶରେ ତା ସହିତ ଆଲାପ ହେବ । ମୁଁ ବଙ୍ଗଳା ପଢିପାରେ ଏକଥା ବି ସେ ଜାଣିପାରିବ । ତେଣୁ ମୋ ପ୍ରତି ତାର ଉଚ୍ଚ ଧାରଣା ହେବ ।"

ଆମେ ତ ଦଉଡ଼ୋଖା ଦେଇ ଆସୁ ।

ସେ ଦିନ ସେ ଏକା ଆସୁଥାଏ । ତା ପଛେ ପଛେ ମୁଁ ଆସିଲି । ମୁଁ ବି ଏକା ।

ବହୁତ ଅନ୍ତର୍ଦ୍ୱନ୍ଦ୍ୱ, ବହୁତ ସଙ୍କୋଚ, ବହୁତ ଭୟର ବାଧା କାଟି ତା ପାଖକୁ ଲାଗିଆସି କହିଲି, 'ପରିଣୀତା ବହିଟି ମତେ ଟିକିଏ ଦେଇ ପାରିବେ ? ମୁଁ କାଲି ଫେରାଇ ଦେବି ।"

ଏତିକ କଥା କହିବାକୁ ମୁଁ ମନେ ମନେ ଆଗରୁ ରିହାରସାଲ୍ କରିଥିଲି । କିନ୍ତୁ କହିବା ବେଳେ ମୋର ଗଳା ଶୁଖିଯାଉଥିଲା । ମୁଁ ସେଇ କଥା ଠିକ ସ୍ପଷ୍ଟ ସ୍ୱରରେ କହିଚି କି ନା ଜାଣେନା ।

ମନୋରମା ମତେ ଚାହିଁଲା ।

ଏହା ତା ସହିତ ମୋର ଦ୍ୱିତୀୟବାର ଚକ୍ଷୁ ବିନିମୟ । ଆଗରୁ ଥରେ ଲାଇବ୍ରେରୀରେ ହୋଇଥିଲା । ମୋ ଅନ୍ତର ଭିତରେ ଏକ ଶିହରଣ ଅନୁଭବ କଲି । ସେ କିଛି କଥା ନ କହି ବହିଟି ବଢାଇ ଦେଲା ।'

'ତା ପରଦିନ 'ବହୁତ ଧନ୍ୟବାଦ' କହି ବହିଟି ଫେରାଇ ଥିଲ ନା ?'

"ତୁମେ କିପରି ଜାଣିଲ ?"

"ଜାଣିବା କଣ କଷ୍ଟ କଥା ! ତାହାହିଁ ତ ସ୍ୱାଭାବିକ ।"

"ମନୋରମାଠାରୁ ପଦେ କଥା ଶୁଣିବାପାଇଁ ମୁଁ ଆଉ ଦୁଇଚାରି ପଦ କଥା ବି କହିଥିଲି । 'ପରିଣୀତା' ବହିଟି ମତେ ବହୁତ ଭଲ ଲାଗିଲା । ଆପଣଙ୍କୁ କିପରି ଲାଗିଲା ? 'ଶରତ ଚାଟାର୍ଜିଙ୍କର ଅନ୍ୟ କିଛି ବହି ପଢିଛନ୍ତି କି ନାହିଁ ? ମୋ ପାଖରେ 'ଦତ୍ତା' ଅଛି । ଜଣେ ବନ୍ଧୁ ପଢ଼ିବାକୁ ନେଇଛନ୍ତି । ମୁଁ ଦୁଇ ଦିନ ପରେ ଦେବି ।' ମନୋରମା ବେଶୀ କଥା କହି ନଥିଲା । 'ହଁ ନାଁ' 'ହଉ' ବୋଧହୁଏ ଏପରି କେତୋଟି ଶବ୍ଦରେ ତାର ଉତ୍ତର ସମାହିତ ହୋଇଥିଲା । କିନ୍ତୁ ତା କଣ୍ଠର ସେତିକ ଭାଷା ମୋ ପାଇଁ ଥିଲା ଦୁର୍ଲଭ ଆନନ୍ଦର ଉତ୍ସ ।

ସେ ଦିନ ଏକ ଦୁର୍ଗ ବିଜେତାର ଆତ୍ମାଭିମାନରେ ମୋର ହୃଦୟ ଫୁଲି ଉଠିଥିଲା ।"

"ଆଉ ତମେ ସେଥିପାଇଁ ଅନେକ ପ୍ରେମ କବିତା ବି ଲେଖି ପକାଇଥିଲ ।'

"ତୁମେ କପରି ଜାଣିଲ ?"

"କପରି ଜାଣିଲି ମାନେ ? ଭୁଲି ଗଲଣି ନା କଣ । ତୁମର ସବୁ କବିତା ଓ ଗଳ୍ପର ମୁଁ ପ୍ରଥମ ପାଠକ ଥିଲି ନା । ଆଚ୍ଛା ତୁମର ମନୋରମା ସହିତ ପ୍ରଥମ ପ୍ରେମ ହେଲା କେବେ ?'

"ପ୍ରେମ ସତ ! କହୁଚ, ମନୋରମାର ଅନ୍ତରରେ ମୁଁ କେତେ ଦୂର ରେଖାପାତ କରିଥିଲି ମୁଁ ଜାଣେନା । ମୁଁ ତାକୁ ମନେ ମନେ ବହୁତ ଭଲ ପାଉଥିଲି ଏବଂ ସେ ମଧ୍ୟ ମତେ ଭଲପାଏ ବୋଲି କଳ୍ପନା କରି ଆନନ୍ଦ ପାଉଥିଲି । ଅସଂଖ୍ୟ ଗଳ୍ପ କବିତା ଭିତର ଦେଇ ସେଇ କଳ୍ପନାକୁ ରୂପ ଦେଉଥିଲି । ତେବେ ସେ ମତେ ଟିକିଏ ଶରୀର୍ତ କରୁଥିଲା, ମୁଁ ଜାଣେ ।"

"କପରି ଜାଣିଲ ?"

"ତୁମର ମନେଅଛି, ପ୍ରଥମ ବର୍ଷର ହାଫ୍‌ଇୟରଲି ପରୀକ୍ଷା ପରେ ଅଧ୍ୟାପକ ମିଶ୍ର ଫାଷ୍ଟ ପେପର୍ ସାହିତ୍ୟ ଖାତା ଗୁଡ଼ିକ ଫେରାଇ ଦେଲେ କେବଳ ମୋ ଖାତାଟି ଗୁଡ଼ି । ତା ପରଦିନ ସେ କ୍ଲାସ୍‌ରେ ପଡା ଆରମ୍ଭ କରିବା ପୂର୍ବରୁ ମୋ ପରୀକ୍ଷା ଖାତାରୁ କେତେ ଗୁଡ଼ିଏ ଉତ୍ତର ପଢ଼ି ଶୁଣାଇଲେ ।"

"ଠିକ୍ ମନେଅଛି । ତା ପରେ ସେ ତୁମଙ୍କୁ ଡ଼ାୟାସ୍ ଉପରକୁ ଡାକିଲେ । ତୁମଙ୍କୁ ପ୍ରଶଂସା କଲେ । ସେ ତୁମକୁ ହାଇଏଷ୍ଟ ନମ୍ବର ଦେଇଥିଲେ ।"

" ଦେଖୁଚ, ଠିକ୍ ମନେରଖିଚ । ସେ ଦିନ କ୍ଲାସରୁ ବାହାରି ଆସିବା ପରେ ମନୋରମା ମୋଠାରୁ ଖାତାଟି ମାଗି ନେଇଥିଲା ।"

"ତୁମେ ମଧ୍ୟ ତା ଖାତାଟି ମାଗି ନେଇଥିଲ ନା ? "

" ତୁମେ ତ କଣ ସବୁ ଜାଣିଥିବାପରି କହୁଚ । "

"ଏଇଟା ତ ନେଚରାଲ୍ କଥା । ତୁମେ ଜକେ ମଧ୍ୟ ମତେ ଅନେକ କଥା କହୁଚ । "

"ତୁମେ ସେକଥା ବି ମନେ ରଖିଚ ?

"କପରି ମନେ ନ ରଖିବି ! ତୁମଠାରୁ ସେ କଥା ଶୁଣିବା ବେଳେ ମୁଁ ପରା ମନେ ମନେ ଈର୍ଷ୍ୟାରେ ଜଳି ଯାଉଥିଲି । ଆହୁରି ଯାହା ମନେଅଛି ମୁଁ କହିବି ?

"କଣ ?'

' ତୁମେ ମନୋରମାର ପରୀକ୍ଷା ଖାତାରେ ଗୋଟାଏ ପ୍ରେମ କବିତା ଲେଖି ତାକୁ ଫେରାଇଥିଲ ।'

ମୁଁ ଚମକି ପଡ଼ିଲି ।

'ତୁମେ କପରି ଜାଣିଲ ? ଏକଥା ତ ମୁଁ ତୁମକୁ କଦାପି କହି ନଥିବି ।

"ମତେ ନ କହିଥିଲେ ଆଉ କାହାକୁ କହିଥିବ କମ୍ବା ଆଉ କେହି ଜାଣିଥିଲେ ମତେ କହିଥିବ । କିନ୍ତୁ ମୁଁ ଜାଣେ । ସେ କଥା ଥାଉ । ତୁମର ଅସଲ ପ୍ରେମ କେବେ ହେଲା କହନା । ''

"କହିଲି ପରା ମନୋରମାର ମନକଥା ମୁଁ କେବେ ଜାଣିନି । ତେବେ ତା ସହିତ ପରିଚୟ ଘନିଷ୍ଠ ହେବାକୁ ଆରମ୍ଭ ହେଲା ସେକେଣ୍ଡ ଇୟରରେ । କଲେଜ ଆନୁଆଲ୍ ଡ଼େ ରେ ଗଳ୍ପ କବିତା ଏକାଙ୍କିକା ସବୁ ବିଷୟରେ ଘନ ଘନ କରତାଳି ଭିତରେ ପ୍ରଥମ ପୁରସ୍କାର ପାଇ ବିଜୟୋଲ୍ଲାସରେ ଡ଼ାୟାସ୍‌ରୁ ଓହ୍ଲାଇ ଆସୁଥିବା ବେଳେ ମନୋରମା କହିଲା, 'କଣ ସବୁଯାକ ପୁରସ୍କାର ଆପଣ ଏକା ନେଇଗଲେ ?'

ମନୋରମାର ଏତିକି କଥାର ମୂଲ୍ୟ ମତେ ଶହ ଶହ ମୟୂର ସିଂହାସନ, ଲକ୍ଷ ଲକ୍ଷ କୋହିନୂର ଠାରୁ ଅଧିକ ମୂଲ୍ୟବାନ୍ ମନେ ହୋଇଥିଲା । ମୁଁ ତାହାଠାରୁ ଏଇ ପ୍ରଶଂସାଟିକକ ପାଇବାର ଆଶା କରି ନଥିଲି । ମୋର ଲେଖା ଲେଖିର ସାର୍ଥକତା ମୁଁ ସେଦିନ ପାଇ ଯାଇଥିଲି । '

"ଆଉ ସେ ପୁରସ୍କାରରୁ କିଛି ବି ମନୋରମାକୁ ଦେଇଥିଲ ।"

"ହଁ, ତା ପରଦିନ ପୁରସ୍କାର ପାଇଥିବା ବହିଭିତରୁ ଗୋଟିଏ ବହି ତାକୁ ଉପହାର ଦେଇଥିଲି । କିନ୍ତୁ ତୁମେ କପରି ଜାଣିଲ ?"

"ଫେର୍ ସେଇ କଥା 'କପରି ଜାଣିଲ' ? ତୁମର ସେ ଉପହାର ବହିଟା ଏବେ ବି ମନୋରମା ପାଖରେ ଅଛି । ମୁଁ ଦେଖିଛି ।"

"ମିଛକଥା ।" ମୁଁ ବିଶ୍ୱାସ କରିପାରିଲି ନାହିଁ ।

ମିଛ ନୁହେଁ ସତ । ମୁଁ ମନୋରମାକୁ କହିବି । ସେ ବହିଟା ତୁମକୁ ଦେଖାଇ ଦେବ । ସେ ବହିର ପ୍ରଥମ ପୃଷ୍ଠାରେ ତୁମର କବିତା ପଦକ ବି ଅଙ୍କୁରିତ ଅଛି ।"

ମନୋରମାର ପ୍ରଶଂସା ଶୁଣିବାଦ୍ୱାରା ଯେଉଁ ଆନନ୍ଦ ପାଇଥିଲି, ଆଜି ସେଇପରି ଆନନ୍ଦର ଶିହରଣ ମୋ ଭିତରେ ପ୍ରଶ୍ନିଅରେ ଅନୁଭବ କଲି ।

"ଆଚ୍ଛା, ତାପରେ କଣ ହେଲା ?"

"ଆଉ ହେବ କଣ । ମୁଁ ମନୋରମାକୁ ଅଧିକରୁ ଅଧିକ ଭଲପାଇ ବସିଲି ।"

"ଅର୍ଥାତ୍ ବସି ବସି ବହୁତ ବହୁତ ପ୍ରେମ କବିତା ଓ ରୋମାଣ୍ଟିକ୍ ଗଳ୍ପ ଲେଖିଲ ।"

ଦୁହେଁଯାକ ହୋ ହୋ ହୋଇ ହସି ଉଠିଲୁ ।

"ଥରେ ଥରେ ମନୋରମା ତାଙ୍କ ଘରକୁ ଡ଼ାକି ନେଇଥିଲା । ତାର ବାପା ବୋଉଙ୍କ ସହିତ ପରିଚୟ କରେଇ ଦେଇଥିଲା । ବିଶେଷତଃ କବି ଭାବରେ ପରିଚୟ କରେଇ ଦେଇଥିଲା । ସେଥିପାଇଁ ମୁଁ ବହୁତ ଖୁସୀ ହୋଇଥିଲି ।"

"କିନ୍ତୁ ମନୋରମାର ସାହିତ୍ୟଜ୍ଞାନ ବହୁତ କମ୍ ଥିଲା, ଜାଣିଚ ତ ?"

"ସାହିତ୍ୟ ଜ୍ଞାନ କମ୍ ବୋଲି ତ ମୁଁ କେବେ ମନେ କରିନାହିଁ ।"

"ଯେଉଁ ପରୀକ୍ଷା ଖାତା ତୁମେ ନେଇଥିଲ ସେଥିରେ ସେ କେତେ ନମ୍ବର ରଖିଥିଲା ? ଆଉ, ଏ ରେ ପରି ସାହିତ୍ୟରେ ଫେଲ୍ ହୋଇ ପ୍ରଥମଥର ଗଡ଼ମ୍ ମାରିଥିଲା ?"

ମୁଁ ମନୋରମା ସପକ୍ଷରେ ଯୁକ୍ତିକଲି । "ସାହିତ୍ୟ ସୃଷ୍ଟି କରିବା କେବଳ ସାହିତ୍ୟ ଜ୍ଞାନର ପରିଚାୟକ ନୁହେଁ । ସାହିତ୍ୟକୁ ଆଦର କରିବା ମଧ୍ୟ ସାହିତ୍ୟ ଜ୍ଞାନର ପରିମାପକ ।"

"ବୁଝିଲି, ବୁଝିଲି । ତୁମେ ମନୋରମା ନିନ୍ଦା ସହ୍ୟ କରି ପାରିବ ନାହିଁ-ସେ କଥା ମୁଁ ଭୁଲି ଯାଇଥିଲି ।"

"ସେପରି କାହିଁକି ଭାବୁଚ ?" ମୁଁ ଯୁକ୍ତି କରିବାକୁ ଆଗଭର ହେଲି ।

ଗୋପାଳ ମୋତେ ବାଧା ଦେଇ କହିଲା, "ଥାଉ ବନ୍ଧୁ । ଯୁକ୍ତିରେ କାମ ନାହିଁ । ଆମର ଅସଲକଥା ଅଟକିଗଲା । ପ୍ରେମ କେତେ ଦୂର ଗଲା କହ ।"

"ଆଉ କେତେ ଦୂର ଯିବାପାଇଁ କଣ ଅଛୁ । ଏମିତ ମଝିରେ ମଝିରେ ଟିକଏ ଟିକଏ କଥାବାର୍ତ୍ତା, ଟିକଏ ପରସ୍ପରକୁ ଦେଖା ଦେଖି—"

ପରସ୍ପରକୁ ଛୁଆଁ ଛୁଇଁ ନାହିଁ ?'

"ଥିଲା । ମାତ୍ର ଥରଟିଏ । ଥରେ ବହି ବଢ଼େଇ ଦେବା ବେଳେ ତା ହାତରେ ମୋ ହାତ ବାଜି ଯାଇଥିଲା ।"

"ଓଃ, ମାତ୍ର ଏତକ ।"

"ସେତକ କଣ କମ୍ ସୌଭାଗ୍ୟ ମନେ ହୋଇଛୁ ସେତେବେଳେ ।"

"ନାଁ, ନାଁ । ମୁଁ ଆଶଙ୍କା କଲି ସେଇ ଥରକର ଛୁଆଁ ଛୁଇଁ ଅତି କମ୍‌ରେ ଗୋଟାଏ ଚୁମ୍ବନ ପର୍ଯ୍ୟନ୍ତ ଯାଇଥିବ । ସେତେବେଳେ ତ ତୁମ ଦୁହିଁଙ୍କର ଦଉଡ଼ୋଟା ଭିତରେ କଥାବାର୍ତ୍ତା ହୋଇ ଆସିବା ଦେଖିଲେ ମୋର ଗାତ୍ର ଦାହ ହେଉଥିଲା ।'

"ତୁମର ମନେଅଛୁ, କଲେଜ ନୋଟିସ୍ ବୋର୍ଡରେ କଣେ କାଏ ଗୋଟାଏ 'ଡ଼ାମରା କାଉ' ଗୀତ ଲେଖି ମାର ଦେଇଥିଲା ?"

"ନିଶ୍ଚୟ ମନେଅଛୁ ।

ଡ଼ାମରା କାଉରେ ଡ଼ାମରା କାଉ,
ପ୍ରତିଦିନ କେତେ କୁଆଡ଼େ ଯାଉ ।
ଯିବୁ ଯେବେ ଦିନେ କଲେଜ ପୁରୀ,
ସେଠାରେ ଶୁଣିବୁ ପଢ଼ାଚ ହୁରି ।
କାଏ ମନୋରମା, ମନୋହାରଣୀ,
ଶିଶିର କଣିକା ବିନ୍ଦୁ ଧାରଣୀ ।
କେତେ ଯେ ଆଲାପ କେତେ ଯେ ହାସ
ଦଉଡ଼ୋଟା ମାଳେ ଚ୍ଛଳିଚ ରସ ।
ଦେଖୁଛନ୍ତି ଚ୍ଛହିଁ ଭକତ ଜନ,
ବ୍ରଜ, ବୈଦ୍ୟନାଥ, ଗୋପାଳଗଣ ।
ଅଜୟ ବିଜୟ, ମଦନ, ଶ୍ୟାମ
ଶିଶିର ବିନ୍ଦୁଏ ହୋଇଚ ବାମ ।"

'ତୁମର ଗୀତଟା ମନେ ଅଛୁ କପରି ? ବଡ଼ ଆଶ୍ଚର୍ଯ୍ୟ !"

"ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ବନ୍ଧୁ। କାରଣ ସେ 'ଡାମଗ୍ରକାଉ' କବିତାର କବି ହେଉଚି ମୁଁ ନିଜେ । ତାକୁ ନେଇ ସେଇଠି ସ୍ତଢରେ ମାଡ଼ ଆସିଥିଲା ଅଜୟ ଜଗଦେବ ।"

ମୁଁ ବିସ୍ମୟରେ ବିମୂଢ଼ ହୋଇଗଲି ।

"ରାଗ ନାହିଁ ବନ୍ଧୁ । ମୁଁ ସେଦିନର ଭୁଲ ପାଇଁ ଆଜି କ୍ଷମା ମାଗି ନେଉଚି ।"

"ସେ ଦିନ ନୋଟିସ୍ ବୋର୍ଡରେ ଗୀତଟା ଦେଖି ମୋ ମୁଣ୍ଡ ଖରାପ ହୋଇ ଗଲା । ଏହିପରି ଅଶ୍ଳୀଳ, ଅଭଦ୍ର ଗୀତ ବାହାରିଛି ଜାଣିଲେ ସେ ନିଶ୍ଚୟ ମୋ ସହିତ ସମ୍ପର୍କ ଛିନ୍ନ କରିଦେବ । ତେଣୁ ସେ ଗୀତଟାକୁ ମୁଁ ଚିରି ନେଇଗଲି ସେ ଯେପରି ନଜାଣି ପାରେ—"

"ମନୋରମା କିନ୍ତୁ ଠିକ୍ ଜାଣିଥିଲା । କାରଣ ତା ପାଖକୁ ଡାକରେ ସେ ଗୀତରୁ ଗୋଟାଏ କପି ଚାଲିଯାଇଥିଲା ।"

ମୁଁ କହିଲି, "ତୁମେ ଏତେ ପାଜିଥିଲ ସତରେ !"

"ପାଜି ନୁହେଁ । ବିଶ୍ୱାସ ଘାତକ କହିପାର । କିନ୍ତୁ ଆମର ଷଡଯନ୍ତ୍ର ଫସର ଫାଟି ଯାଇଥିଲା । ତୁମପରି ଆମେ ବି ଭାବିଥିଲୁ ତୁମର ପ୍ରେମ ସେଠିକରେ ଖତମ । କିନ୍ତୁ ଦେଖିଲା ବେଳକୁ ପୁଣି କିଛିଦିନ ପରେ ଦଉଡୋଟାରେ ସେଇ ଗପ । ଆଚ୍ଛା ବର୍ତ୍ତମାନ ତା ପରବର୍ତ୍ତୀ ଘଟଣା କୁହ ।"

'ତା ପରବର୍ତ୍ତୀ ଘଟଣା ଆଉ କିଛି ନାହିଁ । ତା ପରେ ପରୀକ୍ଷା ପାଖେଇ ଆସିଲା । ମୁଁ ପଢ଼ାପଢ଼ିରେ ମନ ଦେବାକୁ ଚେଷ୍ଟା କଲି । କିନ୍ତୁ ମନ ଭିତରେ ତ ସେଇ ମନୋରମା । ପାଠ ହେଉଚି କୁଆଡେ ! ଇକୋନମିକ୍ସ ବହି ପ୍ରତି ଅରୁଚି । ଖାଲି ପ୍ରେମ କବିତା ଫଳ ଲେଖିବା, ଇଂରାଜୀ, ଓଡ଼ିଆ ବଙ୍ଗଳାରେ ପ୍ରେମ କବିତା ପଢ଼ିବାରେ ସମୟ ଯାଏ । ପରୀକ୍ଷା ବାହାରିବା ବେଳକୁ ବୁଦ୍ଧି ସ୍ଫୁରଣ ହେଲା । ଇକୋନମିକ୍‌ସରେ ଫେଲ୍ ହୋଇ ଚନ୍ଦ୍ର ପଟାଙ୍ଗ୍ ମାରିଥାଏ ।"

"ତେଣେ ମନୋରମା ମଧ୍ୟ ।" ଗୋପାଳ କହିଲା ।

"କିନ୍ତୁ ମୋର ଅବସ୍ଥା ଅବର୍ଣ୍ଣନୀୟ । ମାଟ୍ରିକ୍‌ରେ ଫାଷ୍ଟ୍ ଡ଼ିଭିଜନ୍ ପାଇ ଆଇ,ଏରେ ଫେଲ୍ । ସମସ୍ତଙ୍କ ମୁହଁରେ ଗୋଟିଏ କଥା, 'ଶିଶିର ଛତରା ହୋଇଗଲା ।' ବାପା ରାଗିଯାଇ ଚିଠି ଲେଖିଲେ, 'ତୁ କୁଳର କଳଙ୍କ ।'

'ପରୀକ୍ଷା ଦେଇସାରି ଛୁଟିରେ ଗାଁରେ ଥିଲି । ବାପା ବି ଛୁଟିରେ ଆସିଥିଲେ କିଛିଦିନ । ସେତିକି ବେଳେ ସେ ବୋଧହୁଏ ପଢ଼ି ଦେଇଥାନ୍ତି ମୋ ଡାଇରୀ । ମୋର ଡାଇରୀ ଲେଖିବା ଅଭ୍ୟାସ ଥିଲା । ସେଇ ଡାଇରୀ ସବୁ ଖାଲି ମନୋରମା କଥାରେ ପୂର୍ଣ୍ଣ । ତାରି ବିଷୟରେ ତାରି ଭାବନାରେ ପୂର୍ଣ୍ଣ । ତେଣୁ ମୋ ପରୀକ୍ଷା ଫଳ ବାହାରିବାପରେ ସେ ବୋଉ ପାଖକୁ ଚିଠି ଲେଖିଲେ, 'ତୁମେ ଯାଇ ପୁରୀରେ ଗୋଟିଏ ଘର ନେଇ ରହ । ଶିଶିର ଉପରେ କଡ଼ା ନଜର ରଖିବ । ସେ ଯେପରି ବାହାରକୁ ବୁଲିବାକୁ ଯିବ ନାହିଁ । ତା ସହିତ ଦେଖା କରିବାକୁ ତାର ସାଙ୍ଗ ସାଥୀ କେହି ଆସିବେ ନାହିଁ । କବିତା ଲେଖିବା ବା ବାଜେ ବହି ପଢ଼ିବାରେ ସମୟ ନଷ୍ଟ କରିବ ନାହିଁ !' ଇତ୍ୟାଦି କଡ଼ା ନିର୍ଦ୍ଦେଶ ପୂର୍ଣ୍ଣ ଚିଠି ।

ବୋଉ, ମୁଁ ଓ ଗୋଟିଏ ଚାକର ପିଲା । ଗୋଟିଏ ଛୋଟ ଘର ଭଡ଼ାନେଇ ଆମେ ଦୋଳମଣ୍ଡପ ସାହିରେ ଥାଉ । ବାହାରକୁ ଯିବା ମୋ ପାଇଁ ନିଷିଦ୍ଧ । ଦାଣ୍ଡ ପଟ ଘରେ ବୋଉ ରହେ । ଭିତର ପଟ ଘରେ ମୋ ପାଇଁ ସ୍ଥାନ । ମୋ ପଢ଼ାରେ ଯେପରି କିଛି ବ୍ୟାଘାତ ନହୁଏ, ସେଥି ପାଇଁ ବୋଉର ସାବଧାନତାର ଅନ୍ତ ନାହିଁ । ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ମାତ୍ର ଦୁଇ ମାସରୁ କମ୍ ସମୟ ଥାଏ ।

ମୋର ବହୁତ ଇଚ୍ଛା ହେଉଥାଏ ମନୋରମାର ସନ୍ଧାନ ନେବାକୁ । ସେ ସପ୍ଲିମେଣ୍ଟାରୀ ପରୀକ୍ଷା ଦେଉଛି କି ନାହିଁ । କେଉଁଥିରେ ଫେଲ୍ ହେଲା ଜାଣିବାକୁ ଭାରି ମନ ହେଉଥାଏ । କିନ୍ତୁ ମୁଁ ତ ମୋ ଗୃହରେ ଅନ୍ତରୀଣ ବନ୍ଦୀ । ପରୀକ୍ଷାରେ ଫେଲ୍ ହୋଇ ନିଜକୁ ଏପରି ବଡ଼ ଅପରାଧୀ ମନେ କରୁଥାଏ ଯେ ନିଜ ଇଚ୍ଛାରେ କିଛି କରିବାର ସାହସ ବି ନଥାଏ ।

ଦିନେ ଦ୍ୱିପ୍ରହର ହେବ । ଶୋଇଥିଲି, ନିଦ ଭାଙ୍ଗିଗଲା । ଶୁଣିଲି ବୋଉ କାହା ସହିତ କଥା ହେଉଚି । ପରିଚିତ କଣ୍ଠ ପରି ଲାଗିଲା । ଟିକିଏ କାନେଇଲି । ମନୋରମାର କଣ୍ଠ । ଛାତି ଭିତରଟା ଗୁଡ଼ୁଗୁଡ଼ୁ ହୋଇଗଲା । ଉଠି ବସିଲି । ବୋଉର କଣ୍ଠସ୍ୱର ଶୁଣାଗଲା, 'ସେ ଶୋଇଛି, ତା ସହିତ ଦେଖା ହେବ ନାହିଁ । ତୁମେ ଯାଅ ।'

ମନୋରମା କଣ କହିଲା, ମୁଁ ଶୁଣି ପାରିଲି ନାହିଁ । କାଳେ ବୋଉ କଥା ଶୁଣି ମନୋରମା ଚାଲିଯିବ ବୋଲି ଭାବି ମୁଁ ଘର ଭିତରୁ ବାହାରି ଆସିଲି । କିନ୍ତୁ ସେତେବେଳକୁ ବୋଉ ତାର ବ୍ରହ୍ମାସ୍ତ୍ର ପ୍ରୟୋଗ କରି ସାରିଥିଲା । ବୋଉ କହୁଥିଲା, ଆଉ କେବେ ତା ପାଖକୁ ଆସିବ ନାହିଁ । ତୁମେମାନେ ତ ତା ମୁଣ୍ଡଟିକୁ ନଷ୍ଟ କରିଦେଲ । ତା ଜୀବନକୁ ନଷ୍ଟ କରିଦେଲ । ପୁଣି ଖୋଜି ଖୋଜି ଏଠାକୁ ଆସିଛ !'

'ମନୋରମା ପିଣ୍ଡାର ତଳକୁ ଓହ୍ଲାଇ ଯାଇଥିଲା । ମୁଁ ସାହସ କରି ଆଉ ଟିକିଏ ବି ଆଗେଇ ଆସି ପାରିଲି ନାହିଁ । ତାକୁ ଟିକିଏ ବି ଦେଖି ପାରିଲି ନାହିଁ । କାଳେ ବୋଉ ମତେ ଦେଖିଦେବ ବୋଲି ମୁଁ ଭୟରେ ମୋ ଘରକୁ ଶୀଘ୍ର ପଳେଇ ଆସିଲି ।'

'ମନୋରମା ସହିତ ଆଉ ତାପରେ ଦେଖାହୋଇ ନାହିଁ । ମୁଁ ତ ତାପରେ ବାପାଙ୍କ ପାଖରେ ରହି ଦିଲ୍ଲୀରେ ପଢ଼ିଲି । ଓଡ଼ିଶାଠାରୁ ଏକ ପ୍ରକାର ବିଚ୍ଛିନ୍ନ ହୋଇଗଲି । କିନ୍ତୁ ମନୋରମାର ସେ ଦିନର ଅପମାନକଥା ମୁଁ ଭୁଲି ନାହିଁ । ସେ କାହିଁକି ଆସିଥିଲା, ସେତିକି ହେଲେ ଜାଣିଥାନ୍ତି !''

''ସେ ଯାଇଥିଲା, ତୁମକୁ ସହାନୁଭୂତି ଜଣାଇବାକୁ । ପ୍ରକୃତରେ ବହୁତ ଖୋଜା ଖୋଜି କରି ସେ ତୁମ ଖବର ସଂଗ୍ରହ କରିଥିଲା । ତା ନିଜର ପରୀକ୍ଷା ଫଳ ପାଇଁ ତାର ଦୁଃଖ ନଥିଲା । ତୁମ ପାଇଁ ତାର ବହୁତ ମନ କଷ୍ଟ ହୋଇଥିଲା ।''

'ତୁମେ କିପରି ଜାଣିଲ ?'

''ଫେର୍ ସେଇକଥା । କିପରି ଜାଣିଲ । ତୁମେ ଗଳ୍ପ ଉପନ୍ୟାସରେ ଏତେ ଚରିତ୍ରର ମନ କଥା ଲେଖି ପାରୁଚ । ମୁଁ ଗୋଟାଏ ଚରିତ୍ର ବିଷୟରେ ଧାରଣା କରି ପାରିବି ନାହିଁ ?''

''ମୁଁ କହିଲି, 'କେତେଟା ବାଜିଲା ?''

''ସାଢ଼େ ସାତ ।''

'ଆମେ ତ ଗପରେ ମାତିଲେ । ଯିବା କେତେ ବେଳେ ?'

'ଆମେ ନୁହେଁ, ତୁମେ । ମନୋରମା କଥା କହିବାକୁ ଯାଇ ତୁମେ ଆତ୍ମହରା ହୋଇଗଲ । ମୋର କିଛି ଦୋଷ ନାହିଁ । ମତେ ଶୁଣିବାକୁ ଭଲ ଲାଗୁଥିଲା । ମୁଁ ଶୁଣୁଥିଲି ।''

''ସତରେ ମନ ଭିତରେ ସେଇ ମନୋରମାର ସ୍ମୃତିଟା ଅମର ହୋଇ ରହିଯାଇଛି କି କଣ ! କେତେ କଥାତ ଭୁଲିଗଲିଣି । ତା କଥା ଭୁଲି ନାହିଁ । ହଉ ଚାଲ, ଏଥର ଯିବା ।''

ମୁଁ ଉଠି ଠିଆ ହେଲି ।

'ଟିକିଏ ବସ ବସ' କହି ଗୋପାଳ ଡ଼ାକିଲା, 'ହଇହେ ଶୁଣୁଚ ! କଣ ହେଲା ତୁମର ଚା ।'

ଠିକ୍ ସେଇ ସମୟରେ ଟ୍ରେରେ ଜଳଖିଆ ଧରି ପ୍ରବେଶ କଲେ, ଜଣେ ମହିଳା । ସାମାନ୍ୟ ପୃଥୁଳା, ବୟସ ଚାଳିଶିରୁ ଊର୍ଦ୍ଧ୍ୱ । ମୁହଁରେ, ବେଶରେ ବୟୋଚିତ ସଂଯତ । ଅଳ୍ପ ହସି ମତେ ନମସ୍କାର କଲେ ।

ମୁଁ ପ୍ରତି ନମସ୍କାର କଲାବେଳେହିଁ ତାଙ୍କ ମୁହଁକୁ ଦେଖିଲି ।

ସେ ଟେବୁଲ୍ ଉପରେ ଟ୍ରେଟିକୁ ରଖି ପୁଣି ଘର ଭିତରକୁ ଚାଲିଗଲେ, 'ମୁଁ ଆସୁଚି କହି ।'

ମୁଁ କହିଲି, ''ଗୋପାଳ, ମୋର ମନେ ହେଉଚି ମୁଁ ତାଙ୍କୁ କେଉଁଠି ଦେଖିଚି !''

''କାଁ, ନା'' ଗୋପାଳ କହିଲା ।

''ହଁ, ମତେ ଦୋ ଦୋ ଚହ୍ନା ଜଣାଯାଉଚି ।''

ଗୋପାଳ ସେଇଠି ଥାଇ ପାଟି କରି କହିଲା, ''ହଇହେ, ଶୁଣୁଚ ! ଶିଶିର ବାବୁ କହୁଛନ୍ତି, ସେ ତୁମଙ୍କୁ ଆଗରୁ କେଉଁଠି ଦେଖିଛନ୍ତି । ଇଆଡ଼େ ଟିକଏ ଆସିଲ—''

ଭଦ୍ରମହିଳା ପୁନଃ ପ୍ରବେଶ କଲେ । ଗୋପାଳ ଠିଆହୋଇ କହିଲା, ''ପରିଚୟ କରେଇ ଦିଏ ସେ ଶ୍ରୀମତୀ ପଟ୍ଟନାୟକ । ମାଇଁ ମିସେସ୍ । ଆଉ ଇଏ...''

ଏକ ଆକସ୍ମିକ ଉତ୍ତେଜନାରେ ମୁଁ ସୋଫାରୁ ଉଠିପଡି ଭଦ୍ର ମହିଳାଙ୍କର ହାତ ଦୁଇଟିକୁ ଧରି ପକାଇ କହି ଉଠିଲି, ''ମନୋରମା'' !

ବୋକାଙ୍କ ଭଳି ମୁଁ ଗୋପାଳକୁ ଚାହିଁଲି । ଗୋପାଳ ହସ ଚାପିବାକୁ ଚେଷ୍ଟା କରି ପାରୁ ନଥିଲା ।

ମନୋରମାଙ୍କୁ ଚାହିଁଲି । ସେ ସଲଜ୍ଜ ମଧୁର ସ୍ମିତ ହାସ୍ୟ ଫୁଟାଇ କହିଲେ, ''ବସନ୍ତୁ'' ।

୩ । ୧୦ । ୭୬



# ମନସ୍ତତ୍ତ୍ୱବିତ୍

ସ୍ତ୍ରୀ ତାଙ୍କ ନାମରେ ଆସିଥିବା ଚିଠିଟି ପଢ଼ିସାରି ହସି ଉଠିଲେ ।

ମୁଁ ଚା କପ୍‌କୁ ମୁହଁରୁ ତଳକୁ ଆଣୁ ଆଣୁ କହିଲି, "କଣ, କଥା କଣ ? ଏତେ ହସ କାହିଁକି ?"

ସ୍ତ୍ରୀ କହିଲେ, "ଗୋଟାଏ ମଜାକଥା ।"

"ଆମକୁ ସେ ମଜାରୁ କିଛି ଭାଗମିଳୁ ।"

"ନା ନା, ଅତି ଗୋପନୀୟ କଥା ।"

"ତୁମ ଆଉ ମୋ ଭିତରେ କଣ କିଛି ଭେଦଭାବ ଅଛି ।" ତୁମେ ଆଉ ମୁ ତ ଏକ ହୋଇ ଯାଇଛେ, ନୁହେଁ ?

ସ୍ତ୍ରୀ କହିଲେ, ' କଥା କହିବାରେ ତ ପଟାନ୍ତର ନାହିଁ । କଥା କହି କାମ ଆଦାୟ କରି ନେବାର କଳା ତୁମ ପାଖରେ ସରିଯାଇଛି ।'

ମୁ ଟିକିଏ ଅଭିମାନ କଲାପରି ଛଳନା କରି କହିଲି, 'ଆଚ୍ଛା ଥାଉ ବାବା । ତୁମର ମୋ ନାମରେ କଳଙ୍କ ଲେପନ କରିବା ଦରକାର ନାହିଁ । ମୋର ମଧ୍ୟ ସେ ମଜାକଥା ଜାଣିବା ଦରକାର ନାହିଁ । '

ଏଥର ସ୍ତ୍ରୀ ନରମ ହୋଇ ଚିଠିଟିକୁ ବଢ଼ାଇ ଦେଉଦେଉ କହିଲେ, ' ବାପ୍‌ରେ, ଫାଗେ ଫାଗେ ରାଗିଗଲ ନା—ନିଅ ।'

ମୁଁ 'ଥାଉ, ଥାଉ' କହି ମୋର ଉତ୍କଣ୍ଠାକୁ ଚାପି ରଖିବାକୁ ଚେଷ୍ଟାକଲି ।

କିନ୍ତୁ ସ୍ତ୍ରୀ ହାତରେ ଚିଠିଟି ଗୁଞ୍ଜିଦେଲେ । ସେହି ଚିଠିକୁ ଟିକିଏ ବି ପରିବର୍ତ୍ତନ ନକରି ଯଦି ଏଠାରେ ଉଦ୍ଧାର ନ କରେ, ତା ହେଲେ ହୁଏତ ମୂଳ ଘଟଣାର ବୈଶିଷ୍ଟ୍ୟ ଠିକ୍ ପ୍ରକାଶ ପାଇବ ନାହିଁ । ତେଣୁ ସେହି ଚିଠିକୁ ଏଠାରେ ଉଦ୍ଧାର କରିଦେଉଚି ।

ଚିଠିର ଲେଖିକା, ମୋର ସ୍ତ୍ରୀଙ୍କର ଜଣେ ପ୍ରିୟ ବାନ୍ଧବୀ । ତାଙ୍କର ନାମ ସୁଚନ୍ଦା । ମୋର ସ୍ତ୍ରୀ ବି. ଏ ପଢା ଶେଷ ହେବାପରେ ପରେ ମତେ ବିବାହ କରି ପଢା ସାଙ୍ଗ କଲେ । କିନ୍ତୁ ସୁଚନ୍ଦା ଏହାଭିତରେ ତାଙ୍କର ଏମ୍, ଏ ପଢ଼ା ଶେଷକରି ପରୀକ୍ଷା ଫଳର ପ୍ରତୀକ୍ଷାରେ ଅଛନ୍ତି । ମଝିରେ ମଝିରେ ପତ୍ରାଳାପ ଚାଲେ ।

ଚିଠିଟି ଏହିପରି ।

ନମିତା,

ମୁଁ ଏହା ଭିତରେ ସମ୍ବଲପୁର ଚାଲି ଯାଇଥିଲି । ଯେଉଁଠାରେ ମୋର ସାନ ମାଉସୀଙ୍କ ଝିଅର ବାହାଘର ଥିଲା । ବାହାଘର ବେଶ୍ ଧୁମ୍ଧାମରେ ହେଲା ମୁଁ କାଲି ସନ୍ଧ୍ୟାବେଳେ ଫେରିଲି । ସେଠାରେ ଜଣେ ଅଜବ ଲୋକ ସହିତ ମୋର ପରିଚୟ ହେଲା । ସେ ଭଦ୍ରଲୋକ ମୋର ମଉସାଙ୍କର ମାମୁଁ । ଅର୍ଥାତ୍ ମୋର ଅଜା । ଦିଲ୍ଲୀରେ କଣ ଗୋଟାଏ ବଡ଼ ଚାକିରୀ କରନ୍ତି । ନାମରେ ସେ ତରୁଣ (କାନ୍ତ) । କିନ୍ତୁ ବୟସରେ ପୌଢ । ତେହେରାରେ ଅବଶ୍ୟ ସାର୍ଥକ ନାମା । ମୁଣ୍ଡରେ ବାଳ ତ ଗୋଟିଏ ପାଚି ନାହିଁ, ତାରୁଣ୍ୟର ଶେଷ କାନ୍ତି ମଧ୍ୟ ମୁଖ ମଣ୍ଡଳରୁ ସମ୍ପୂର୍ଣ୍ଣ ଲିଭିନାହିଁ । ସୂର୍ଯ୍ୟାସ୍ତର ରଂଗରେ ଯେପରି କିଛିଟା ଉଦୟର ଶୋଭା ଥାଏ, ଠିକ୍ ବୋଧହୁଏ ସେପରି ଯୌବନର କିଛିଟା ସ୍ନିଗ୍ଧତା ଓ କମନୀୟ ଭାବ ତାଙ୍କ ମୁହଁରେ ରହିଯାଇଛି । ଗୋଟିଏ ବି ଦାନ୍ତ ପଡିନାହିଁ । ଦେଖିଲେ ସେଥିପାଇଁ ବୟସ ଏତେ ବେଶୀ ବୋଲି ମନେହୁଏନା । ଭଦ୍ରଲୋକଙ୍କୁ ମୁଁ ତ କେବେ ଆଗରୁ ଦେଖି ନ ଥିଲି । ସେ ଆସି ଘରେ ପହଞ୍ଚିବା ପରେ ମତେ ମାଉସୀ ଚା କପେ ଦେଇ କହିଲେ ତାଙ୍କୁ ଦେଇ ଆସିବାକୁ । ମୁଁ ତାଙ୍କ ପାଖରେ ଚା କପ୍ ଧରି ଠିଆ ହେଲି । ସେ ଫାଗେ ଫାଗେ ଚା' କପ୍‌ଟା ମୋ ହାତରୁ ନେଲେ ନାହିଁ । ମତେ ଖାଲି ଓ ଉତ୍ସୁକ ଆଖିରେ ଚାହିଁ ରହିଲେ । ମୁଁ ଟିକିଏ ଅପ୍ରସ୍ତୁତ ବୋଧ କଲି । ତା ପରେ ସେ ମୋର ହାତରୁ ଚା କପ୍‌ଟିକୁ ନେଉ ନେଉ କହିଲେ, 'ତୁମଙ୍କୁ ତ ଆଗରୁ କେଉଁଠି ଦେଖିବା ପରି ଲାଗୁଛି ।

ମୁଁ କହିଲି, 'ଦେଖିଥିବେ । କିନ୍ତୁ ମୁଁ ଆପଣଙ୍କୁ ଆଗରୁ କେଉଁଠି ଦେଖିନାହିଁ ।'

'ତୁମର ପରିଚୟ ?'

ପାଖରେ ବସିଥିବା ଜଣେ ଭଦ୍ରମହିଳା କହିଲେ, 'ସେ ପରି ଝିନା ( ମାଉସୀ ) ର ଭଉଣୀର ଝିଅ ।'

ମୁଁ ଆତ୍ମ—ପରିଚୟ ଦେବାର ଅସ୍ୱସ୍ତିରୁ ରକ୍ଷା ପାଇଗଲି । ତା ପରେ ପ୍ରଶ୍ନ, 'ତୁମ ନା ?'

'ସୁଚନ୍ଦା'

'କଣ କରୁଛ ?'

ଏମ୍,ଏ ପରୀକ୍ଷା ଦେଇଛି ।'

'ସବ୍ଜେକ୍ଟ ?'

'ପଲିଟି କାଲ୍ ସାଇନ୍ସ ।'

'ବି,ଏରେ ଅନର୍ସ ଥିଲା ?'

'ହଁ'

'କେଉଁ କ୍ଲାସ ପାଇଥିଲ ?'

'ଫାଷ୍ଟ କ୍ଲାସ ।'

'ଭେରିଗୁଡ୍ । ପୋଜିସନ ?'

'ଫାଷ୍ଟ ।'

'ମାର୍ଭେଲସ୍ । ଏମ୍, ଏ ପରୀକ୍ଷାରେ କପରି କରିଛ ?'

'ଭଲ ।'

'କି ପୋଜିସନ୍ ଆଶା କରୁଛ ?'

'ଫାଷ୍ଟ କିମ୍ବା ସେକେଣ୍ଡ ।'

'ଭେରି ଗୁଡ୍ । ଦେଖୁଛ, ତୁମେ ତାହାହେଲେ ଜଣେ ବିଦୁଷୀ ମହିଳା ।'

ତାଙ୍କର ପ୍ରଶଂସା ବାଣୀ ମତେ ଭଲ ଲାଗିଲେ ବି ଟିକିଏ ଲଜ୍ଜା ହେଲା ।

ତା ପରେ ତାଙ୍କର ପୁଣି ପ୍ରଶ୍ନ, 'ପଢ଼ା ପରେ ?'

'ରିସର୍ଚ୍ଚ କରିବି । କିମ୍ବା ଚାକିରି ପାଇଲେ ଚାକିରି କରିବି ।'

'କି ପ୍ରକାର ଚାକିରି ?'

'ଅଧ୍ୟାପିକା ।'

'ଆଉ କିଛି ନୁହେଁ ?'

'କମ୍ପିଟେଟିଭ୍ ଏକଜାମିନେସନ୍‌ରେ ବସିବି ।'

'ଭେରି ଭେରି ଗୁଡ୍ । ଆଉ ବିବାହ ? ଚାକିରି ପାଇବା ପରେ ?'

'ମୁଁ ବିବାହ କରିବି ନାହିଁ ।'

'କାହିଁକି ?'

କାହିଁକି ବିବାହ କରିବି ନାହିଁ ତା ପାଇଁ ଉତ୍ତରଟା ମୁଁ ଫାଗେ ଫାଗେ ଭାବି ପାରିଲି ନାହିଁ । ମୋର ଉତ୍ତରକୁ ଅପେକ୍ଷା କରି ସେ କହିଲେ, 'ଭଲ ଚାକିରୀ ମିଳିଲେ ଯେପରି ଗ୍ରହଣ କରିବ, ସେପରି ଭଲ ବର ପାଇଲେ ମଧ୍ୟ ବିବାହ କରିବ ଏଇଆ ତ ?'

ତା ପରେ ସେ କହିଲେ, 'ମତେ ଲାଗୁଚି, ମୁଁ ତୁମଙ୍କ ଯେପରି କେଉଁଠାରେ ଦେଖିଚି । କିନ୍ତୁ କେଉଁଠି କେବେ ଦେଖିଚି ମୁଁ ଭାବି ପାରୁନି । ଆଜିର ପରିଚୟରୁ ଜାଣୁଚି, ତୁମ ସହିତ ଆଉ କେଉଁଠାରେ ଦେଖା ହୋଇନି । କିନ୍ତୁ ମୁଁ ଅନ୍ତର ଭିତରେ ବୋଧ କରୁଚି, ତୁମ ସହିତ ମୋର ଏକ ଅନ୍ତରଙ୍ଗ ସଂପର୍କ ଆଗରୁ ରହିଚି ।'

'ମୁଁ କିନ୍ତୁ ଆପଣଙ୍କ ସହିତ ଆଗରୁ କେବେ ଦେଖା ହୋଇଥିବା ପରି ବୋଧ କରୁନି ।'

'ମୁଁ କିନ୍ତୁ ବୋଧ କରୁଚି, ତୁମେ ଯେପରି ମୋର ଖାଲି ଜଣାଶୁଣା ନୁହଁ, ଅତି ପରିଚିତ । ଅର୍ଥାତ୍ ବର୍ତ୍ତମାନ ପାଇଁ ଇଟ୍ ମେ ବି ଏ କେସ୍ ଅଫ୍ ଲଭ୍ ଆଟ୍ ଫାଷ୍ଟ ସାଇଟ୍ ।'

ଭଦ୍ରଲୋକ ଅତି ନିଃସଂକୋଚ୍‌ରେ କଥା ଗୁଡ଼ାକ କହିଗଲେ । ହୁଏ ତ ଅଜାଙ୍କର ନାତୁଣୀ ପ୍ରତି ପରିହାସ ଯୋଗ୍ୟ କଥା । ମତେ କିନ୍ତୁ ବହୁତ ଖରାପ ଲାଗିଲା ।

ମୁଁ ତାଙ୍କୁ ଦୃଢ଼ତାର ସହିତ କହିଲି, 'ସର୍ଟେନ୍‌ଲି, ନଟ୍ ସୋଂ ଇନ୍ ମାଇଁ କେସ୍ ।'

ଭଦ୍ରଲୋକ ଟିକିଏ ହସିଲେ ।

କହିଲେ, "Why not, can't you love me ? I Am I too old to be worthy of your (love)?"

ଭାଗ୍ୟବଶତଃ ସେଠାରେ ତାଙ୍କ କଥା ଶୁଣିବାକୁ ଆଉ କେହି ନ ଥିଲେ । ପ୍ରେମ ବିଷୟରେ ଗୋଟିଏ ଅବିବାହିତା ଝିଅ ସହିତ ଏପରି ନିର୍ଲଜ ଭାବରେ ସେ କିପରି କଥାବାର୍ତ୍ତା କରି ପାରୁଛନ୍ତି ମୁଁ ବୁଝିପାରିଲି ନାହିଁ ।

ମୁଁ କିଛି କହିବା ପୂର୍ବରୁ ସେ କହିଲେ, "ମୋର ବୟସ କେତେ ଜାଣ ? ମୋତେ ଏକାବନ ପୂରିବାକୁ ଆଉ କେତୋଟି ମାତ୍ର ଦିନ ବାକୀ ଅଛି, ।

ତାଙ୍କର ବୟସ ଏତେ ବେଶୀ ଜାଣିବାପରେ ତାଙ୍କ କଥା ଗୁଡ଼ାକ ବଡ଼ ଅଭଦ୍ରୋଚିତ ମନେହେଲା ।

ସେ ପୁଣି କହି ଚାଲିଲେ । 'ମୋର ପୁଅ ଇଂଜିନିୟରିଂ ପଢ଼ୁଛି । ମୁଁ ଜାଣେ ସେ ବି ଗୋଟିଏ ତା'କ୍ଲାସ ପଢ଼ୁଥିବା ଝିଅ ପ୍ରେମରେ ପଡ଼ିଛି । ମୋର ବଡ଼ ଝିଅ ୩ବର୍ଷ ହେଲାଣି ବାହା ହେଲାଣି । ସାନ ଝିଅ ମାଟ୍ରିକ୍ ପଢ଼ୁଛି । ଅର୍ଥାତ୍ ସାଂସାରିକ ମତରେ ମୁଁ ପ୍ରେମ କରିବାର ବୟସ ପାର ହୋଇ ଯାଇଛି । କିନ୍ତୁ ହଠାତ୍ ତୁମକୁ ଦେଖିବାପରେ ମୋର ମନେ ହେଉଛି, ମୁଁ ଯେପରି ସମୟର ପ୍ରତିକୂଳ ସ୍ରୋତରେ ଭାସି ଚାଲିଛି । ମୁଁ ବୋଧ କରୁଛି ମୁଁ ବୃଦ୍ଧ ନୁହେଁ, ତରୁଣ, ଚିରତରୁଣ, ଚିର ସବୁଜ ।'

ଭଦ୍ରଲୋକଙ୍କର ଏ ନିର୍ଲଜ ପ୍ରଗଳ୍ଭତା ମତେ ବଡ଼ ଖରାପ ଲାଗୁଥିଲା । କିନ୍ତୁ ଅଜାଙ୍କର କଥା ମୋତେ ନାତୁଣୀ ଭାବରେ ଗ୍ରହଣ କରିବାକୁ ହେବ । ମୁଁ କହିଲି, କିନ୍ତୁ ମନେରଖିବେ ମୁଁ କଥାର ଜାଲରେ ଧରା ପଡ଼ିବା ପକ୍ଷୀ ନୁହେଁ । ମୁଁ ଜାଣେ Young is young and old is old and the twain shall never meet ' ତାଙ୍କର ବୃଦ୍ଧତ୍ୱ ସମ୍ପର୍କରେ ମୁଁ ଯେ ଖୁବ୍ ସଚେତନ ଏହା ଜଣାଇ ଦେବା ପାଇଁ ମୁଁ ଟିକିଏ ରୁକ୍ଷ ଭାବରେ ଏହି କଥା କହିଲି । ମୋର ବିଶ୍ୱାସ ଥିଲା ଏତିକିରେ ଅଜାଙ୍କର ବାକ୍ ଚାତୁର୍ଯ୍ୟର ସ୍ରୋତ ରୁଦ୍ଧ ହୋଇଯିବ । କିନ୍ତୁ ତାହା ହେଲା ନାହିଁ ।

ଭଦ୍ରଲୋକ କହିଲେ, "ଦେଖ ସୁଚରିତା । ଏ ସୃଷ୍ଟିରେ ଯାହା ମିଳନ ଯୋଗ୍ୟ ନୁହେଁ ତାହାର ମିଳନ କଦାପି ହୁଏନା । ସେହିପରି ଯେଉଁ ମିଳନ ବିଧି ନିର୍ଦ୍ଦିଷ୍ଟ ତାହାକୁ କେହି ରୋଧ କରି ପାରେନା । କିନ୍ତୁ ମିଳନର ଅର୍ଥ କଣ ?

ପ୍ରେମର ଅର୍ଥ କଣ ? ଦୁଇଟି ତରୁଣ ତରୁଣୀଙ୍କର ଦୈହିକ ମିଳନହିଁ କଣ ପ୍ରେମ ? ସେ ମିଳନର ଉଦ୍ଦେଶ୍ୟ ପ୍ରେମ ନୁହେଁ । ତାର ଉଦ୍ଦେଶ୍ୟ ସନ୍ତାନ ପ୍ରଜନନ । ତାହା ପ୍ରକୃତିର ଉଦ୍ଦେଶ୍ୟ । ସେ ଉଦ୍ଦେଶ୍ୟ ସାଧନ ପ୍ରେମର ମୁଖ୍ୟ ଲକ୍ଷ୍ୟ ହୋଇ ନପାରେ । ପ୍ରେମ ଏକ ହୃଦୟର ଅନୁଭୂତି । ତାହାର ବାହ୍ୟିକ ଅଭିବ୍ୟକ୍ତି ଭିନ୍ନ ଭିନ୍ନ କ୍ଷେତ୍ରରେ ଭିନ୍ନ ଭିନ୍ନ ଭାବରେ ହୋଇଥାଏ । ସେହି ଅଭିବ୍ୟକ୍ତିଟା କିନ୍ତୁ ପ୍ରେମର ସ୍ୱରୂପ ନୁହେଁ ।'

ଏହି ପ୍ରଗଳ୍‌ଭତାର ସ୍ରୋତକୁ ରୋଧ କରିବାର ଶକ୍ତି ମୋର ନଥିଲା । ତେଣୁ ସେହି ସ୍ରୋତକୁ ଅବାଧ ବହିଯିବା ଲାଗି ଛାଡ଼ି ଦେବାକୁ ପଡ଼ିଲା ମତେ ।

ସେ ମାତ୍ର ସେହି ଘଣ୍ଟାଏ ସେଠାରେ ଥିଲେ । ପ୍ରାୟ ସାରାକ୍ଷଣ ମତେ ତାଙ୍କ ପାଖରୁ ଯିବାକୁ ଦେଇ ନଥିଲେ । ମନେ ହେଲା, ଭଦ୍ରଲୋକଙ୍କର ବହୁ ବିଷୟରେ ଅଧ୍ୟୟନ ଅଛି । ତାଙ୍କୁ କଥା କହିବାର କଳାମଧ୍ୟ ଜଣାଅଛି । ତେଣୁ ତାଙ୍କର ଅନର୍ଗଳ ଗପିବାଟା ବେଳେ ବେଳେ ଅରୁଚିକର ବୋଧ ହେଉଥିଲେ ମଧ୍ୟ ଆଉ ବିରକ୍ତି କର ମନେ ହେଉ ନଥିଲା । କେବଳ ପ୍ରେମ ସମ୍ପର୍କରେ କଥା ଗୁଡ଼ାକ ତାଙ୍କ ପରି ବୃଦ୍ଧଙ୍କ ମୁଖରେ ଅଶୋଭନୀୟ ଜଣା ପଡୁଥିଲା ।

ଯିବା ପୂର୍ବରୁ ସେ କହିଗଲେ 'ସୁଚରିତା, ମୁଁ ଏବେ ମଧ୍ୟ ବୋଧ କରୁଚି, ତୁମ ସହିତ ମୋର ଆଗରୁ କେବେ କେଉଁଠି ଦେଖା ହୋଇଥିଲା ଏ ଜନ୍ମରେ ଯଦି ନୁହେଁ, ନିଶ୍ଚୟ ପୂର୍ବ ଜନ୍ମରେ । ମୋର ବିଶ୍ୱାସ ତୁମ ସହିତ ମୋର ପୁଣି ଦେଖାହେବ । ଏ ଜନ୍ମରେ ଯଦି ନୁହେଁ, ନିଶ୍ଚୟ ପର ଜନ୍ମରେ ।'

ଭଦ୍ରଲୋକ ଚାଲିଯିବା ପରେ ମୁଁ ଟିକିଏ ସ୍ୱସ୍ତିର ନିଃଶ୍ୱାସ ମାରିଲି । ମତେ ଟିକିଏ ଆତ୍ମସ୍ଥ ହେବାକୁ ଅବସର ମିଳିଲା । ଏମିତି ଜବରଦସ୍ତ ଲୋକ ମୁଁ କେବେ ଆଗରୁ ଦେଖି ନଥିଲି ।"

ତା ପରେ କିଛି ଗତାନୁଗତିକ କଥା ସହିତ ଚିଠିର ସମାପ୍ତି ।

ସୁଚରିତାର ଚିଠି ପଢ଼ା ଶେଷକରି ମୁଁ କହିଲି, 'ତୁମର ସେ ଭଦ୍ରଲୋକଙ୍କ ବିଷୟରେ ମତାମତ କଣ ?'

ନମିତା କହିଲେ, 'ମାଛରଙ୍କା ପକ୍ଷୀପରି ଏ ପୃଥିବୀରେ ଗୁଡ଼ାଏ ନାରୀରଙ୍କା ପୁରୁଷ ଅଛନ୍ତି । ଏହି ଭଦ୍ରଲୋକ ସେମାନଙ୍କ ଭିତରୁ ଜଣେ ।'

ମୁଁ କହିଲି, 'ନମିତା, ପୁରୁଷମାନେ ଯଦି ନାରୀରଙ୍କା ନହେବେ ଆଉ

ନାରୀମାନେ ପୁରୁଷରଙ୍କା ନହେବେ ତାହାହେଲେ ପୃଥିବୀ ଓଲଟ ପାଲଟ ହୋଇଯିବ ।'

ନମିତା ଅଭିଯୋଗ କଲେ, 'ତୁମେ ତ ସେହି ମାନଙ୍କ ଭିତରୁ ଜଣେ । ଆଉ କଣ କହିବ ।'

ମୁଁ କହିଲି, 'ତୁମ ଆମ କଥା ଗୁଡ଼ । ବର୍ତ୍ତମାନ ମୋର ଏ ଚିଠିରୁ କଣ ଧାରଣା ହେଲା ଜାଣ ? ତୁମ ବାନ୍ଧବୀ ସୁଚନ୍ଦା ଦେବୀ ସେହି ବୃଦ୍ଧଙ୍କ ପ୍ରେମରେ ପଡ଼ିଯାଇଛନ୍ତି ।'

ନମିତା ମୋ କଥା ହସରେ ଉଡ଼େଇ ଦେଲେ ।

କିନ୍ତୁ ମୁଁ ପାଗଳ ନାହିଁ । ମୁଁ ଜଣେ ଦେଶ ବିଦେଶରେ ସୁନାମ ଅର୍ଜନ କରିଥିବା ମନସ୍ତତ୍ତ୍ୱବିତ୍ । ତା ଛଡ଼ା ମୋର ବିଶ୍ୱାସ ନାରୀ ଚରିତ୍ରକୁ ବୁଝିବାକୁ ମୋର ଏକ ସହଜାତ ଅନ୍ତର୍ଦୃଷ୍ଟି ଅଛି । ଯେ କୌଣସି ନାରୀ ବିଷୟରେ ମୋର ଧାରଣା, ମତାମତ ନିଶ୍ଚୟ ନିର୍ଭୁଲ ।

( ୬ )

ପ୍ରାୟ ମାସକ ପରେ ସୁଚନ୍ଦା ଦେବୀଙ୍କର ଦ୍ୱିତୀୟ ପତ୍ର ଆସିଲା । ପତ୍ନୀ ଯଥାପୂର୍ବ ମୋ ହାତରେ ସେଇ ଚିଠିଟି ଅର୍ପଣ କଲେ । ସେଇ ଚିଠିଟି ମୁଁ ପୁଣି ଉଦ୍ଧାର କରୁଚ ।

'ପ୍ରିୟ ନମିତା,

( ପ୍ରାରମ୍ଭିକ ଉପକ୍ରମ ପରେ— )

····· ସେଇ ଜବରଦସ୍ତ ଭଦ୍ରଲୋକ ଏବେ ଫେର୍ନ୍ତ ଚିଠି ଦେଇଛନ୍ତି । ମୁଁ ଭାବୁଥିଲି ତାଙ୍କ ଠାରୁ ମୁକ୍ତି ପାଇଗଲି । କିନ୍ତୁ ଏବେ ସେ ଚିଠି ମାଧ୍ୟମରେ ମୋ ଉପରେ ଆକ୍ରମଣ ଆରମ୍ଭ କରି ଦେଇଛନ୍ତି । ତାଙ୍କ ଚିଠିଟା ଏଥି ସହିତ ପଠାଇଲି । ତୁ ପଢ଼ିସାରି ମୋ ପାଖକୁ ଫେରାଇ ଦେବୁ । ଏ ଚିଠିପତ୍ର କିଛି ସୁନନ୍ଦବାବୁଙ୍କୁ ଦେଖାଇବୁନି । ତୁ କଣ ଭାବୁଚୁ ମତେ ଜଣେଇବୁ ।'

ତରୁଣ ବାବୁଙ୍କର ଚିଠି ।

'ସୁଚନ୍ଦା ସୁଚରିତାସୁ,

ହଠାତ୍ ମୋ ଚିଠିଟା ପାଇ ତୁମେ କଣ ଭାବିବ ବୋଲି ମୁଁ ଭାବୁଚି । ମୋ ଠାରୁ ଚିଠି ପାଇବାକୁ କଣ ଆଶା/ଆଶଙ୍କା କରିଥିବ ? ବୋଧହୁଏ ନୁହେଁ ।

ସେ ଦିନ ମୁଁ ତୁମଙ୍କୁ ମୋର ପ୍ରଗଲ୍‌ଭତା ଦ୍ୱାରା ବିରକ୍ତ କରିଚ, ବୋଧ୍ୟ କରିଚି କି ନାହିଁ ଜାଣେନା । କିନ୍ତୁ ତୁମର ମନୋରଂଜନ କରିବାକୁହିଁ ବହୁତ କଥା ଗପୁଥିଲି । ତୁମେ ହିଁ ମତେ ପ୍ରଗଲ୍‌ଭ କରି ଦେଇଥିଲ । ମୋ ଭିତରେ ଥିବା ଏକ ଅବରୁଦ୍ଧ ସ୍ରୋତର ମୁଖ ତୁମେ ତୁମର ଅଜ୍ଞାତ ସାରରେ ଖୋଲି ଦେଇଥିଲ । ତେଣୁ ଅନ୍ତରରେ ଭାବ ଉଦ୍ବେଳିତ ହେଉଥିଲା ଏବଂ ଭାଷାରେ ରୂପାୟିତ ହେଉଥିଲା । ମୁଁ ଏବେ ମଧ୍ୟ ନିବିଡ଼ ଭାବରେ ଅନୁଭବ କରୁଚି, ମୁଁ ତୁମଙ୍କୁ ଆଗରୁ କେଉଁଠି ଦେଖିଥିଲି । ସ୍ମୃତିର ସାଗର ମନ୍ଥନ କରିମଧ୍ୟ ମୁଁ ସେହି ପୂର୍ବ ପରିଚୟର ସୂତ୍ର ଆବିଷ୍କାର କରିପାରୁନାହିଁ । କିନ୍ତୁ ତୁମ ପ୍ରତି ଏକ ଅନ୍ତରଙ୍ଗତା ବୋଧ ମୋତେ ଅଭିଭୂତ କରି ରଖିଚି । ଏକ ଅବାଞ୍ଛନୀୟ ବୃଦ୍ଧ ମୁଖରେ ଏହିପରି ଭାଷା ବଡ଼ ଅସୁନ୍ଦର ବୋଧ ହେବ । କିନ୍ତୁ ଭାବ ପ୍ରକାଶରେ ମୁଁ ସତତାକୁ ହିଁ ପ୍ରକାଶ କରୁଚି ବୋଲି ଲଜ୍ଜିତ ହେଉ ନାହିଁ ।

ତୁମଙ୍କୁ ସେଦିନ ମୋ ପୁଅ ଝିଅମାନଙ୍କ କଥା କହିଥିଲି । କିନ୍ତୁ ମୋ ସ୍ତ୍ରୀଙ୍କ କଥା କହି ନଥିଲି । ତୁମେ କାହିଁକି ତାଙ୍କ କଥା ପଚାରିଲ ନାହିଁତ । ମୁଁ ଭାବୁଚି ମୋ ବିଷୟରେ ଜାଣିବାକୁ ତୁମର ହୁଏତ ଆଗ୍ରହ ନଥିଲା । ଏଇ ଚିଠିରେ ମୁଁ ତାଙ୍କ ବିଷୟରେ ଲେଖୁଚି ।

ମୋ ସ୍ତ୍ରୀ ନାମରେ କରୁଣା । ରୂପରେ ସୁନ୍ଦରୀ । କର୍ମରେ କୁଶଳା । ଗୁଣରେ ସୁଗୁଣା ଶିକ୍ଷାରେ ବି, ଏ ପାସ୍ । ୨୫ ବର୍ଷ ତଳେ ତାଙ୍କ ସହିତ ମୋର ପ୍ରେମ ବିବାହ ହୋଇଥିଲା । ବଡ ଲୋକର ଝିଅ ହୋଇମଧ୍ୟ ସେ ମତେ ପ୍ରେମ କରିଥିଲେ । ଏବଂ ପିତାମାତାଙ୍କର ଇଚ୍ଛା ବିରୁଦ୍ଧରେ ବିଦ୍ରୋହ କରି ମତେ ବିବାହ କରିଥିଲେ । ତାଙ୍କ ସହିତ ଦୀର୍ଘ ୨୫ବର୍ଷର ଯୁଗ୍ମ ଜୀବନକୁ ମୁଁ ମୋର ଆନନ୍ଦମୟ ଜୀବନ ବୋଲି କହିବାକୁ କୁଣ୍ଠିତ ନୁହେଁ । ସେ ମତେ ସବୁ ଭାବରେ ଆନନ୍ଦ ଦେବାକୁ ସବୁ ପ୍ରକାର ତ୍ୟାଗ କରିବାକୁ ସବୁ ବେଳେ ପ୍ରସ୍ତୁତ । ମୁଁ ତୁମ କଥା ତାଙ୍କୁ କହିଲି । ସେ କହିଲେ, 'ପୂର୍ବ ଜନ୍ମର ସମ୍ପର୍କ କଣ ପରବର୍ତ୍ତୀ ଜୀବନକୁ ପ୍ରଭାବିତ କରେନା ? ମନେକର ପରଜନ୍ମରେ ତୁମ ସହିତ ମୋର ପୁଣି ଦେଖା ହେବ । ସେତେବେଳେ ତ ପ୍ରଥମ ଦେଖାରେ ମୁଁ ତୁମ ପ୍ରେମରେ ପଡିଯିବି । ପ୍ରେମ କରିବାକୁ ସେତେବେଳେ ହୁଏତ ଯଥାର୍ଥ କାରଣ ନଥିବ । ଅନ୍ୟମାନଙ୍କୁ ତାହା ଅଦ୍ଭୁତ ମନେ ହେବ । କିନ୍ତୁ ଏ ଜନ୍ମର ଏ ନିବିଡ ସମ୍ପର୍କର ପ୍ରଭାବ କାଳକ୍ରମେ ଲୋପ ନହେବା ପର୍ଯ୍ୟନ୍ତ ନିଶ୍ଚୟ ମନ ଉପରେ ପଡ଼ିବ ।'

ତୁମଙ୍କୁ ଏ ଚିଠି ଲେଖିବାର ପ୍ରୟୋଜନ ହୁଏତ ନଥିଲା । ମୁଁ ତୁମଙ୍କୁ ମୋର 'ଧାରଣା' ଦ୍ୱାରା ବିଚଳିତ କରିବାକୁ ଚାହେଁନା : ତୁମେ ତୁମ ଭାବରେ

ବିକଶିତ ହୁଅ, ପ୍ରକାଶିତ ହୁଅ, ଏହାହିଁ ମୋର ଆନ୍ତରିକ ଇଚ୍ଛା । ତୁମେ ବିଦୁଷୀ, ଜୀବନରେ ଯଶସ୍ୱିନୀ ହୁଅ । ସୁଖୀ ହୁଅ—ଏହି ଶୁଭକାମନା ମୁଁ ପୋଷଣ କରୁଛି । ମୁଁ ମୋ କଥା କହୁଚି ମୋର ଆତ୍ମ ତୃପ୍ତି ପାଇଁ । ତାକୁ ପ୍ରତ୍ୟାଶାହୀନ ଆତ୍ମପ୍ରକାଶ ବୋଲି କହିପାର ।

ମୁଁ କବି ନୁହେଁ । କିନ୍ତୁ ବହୁ ଦିନ ଆଗେ କବିତା ଲେଖୁଥିଲି । କଲେଜ ମାଗାଜିନ୍‌ରେ ଥରେ ଦୁଇଥର କବିତା ଛପା ହୋଇଥିବ । ବହୁଦିନ ପରେ ପୁଣି ତୁମରି ପ୍ରେରଣାରେ କବିତା ଲେଖିବାକୁ ମନ ହେଲା । ଗୋଟାଏ କବିତା ଲେଖି ପକାଇଲି । ସେହି କବିତାଟି ଏହି ପରି । ତୁମକୁ କପରି ଲାଗିଲା ଲେଖିବ ।

"ମୁଁ ତୁମକୁ ଦେଖିଥିଲି ।
କାଶ୍ମୀରସ୍ଥାନ୍ ହ୍ରଦତୀରରେ
ଏକ ଶାନ୍ତ ନୀରବ ସାୟାହ୍ନେ ।
ମୁଁ ଏକାକୀ ପଥଭ୍ରଷ୍ଟ—
ମତେ ଥରେ ଚାହିଁଦେଇ
ତୁମେ ଟିକେ ସ୍ମିତ ହସି
ହୋଇଥିଲ ଗୋ ଦୋହନେ ରତ ।

ଭେଟିଲି ତୁମକୁ ପୁଣି
ମାଳୟର ଉପକୂଳେ—
ପୋତ ମୋର ଭିଡିଥିଲି ଯହିଁ ।
ଢେଉଁ ଢେଉଁ ବୁଲି ଥିଲ ବାଲୁକା ଶଯ୍ୟାରେ
ଏକ କୃଷ୍ଣସାର ପରି,
ଗୋଟାଇ ଗୋଟାଇ ବହୁ ରଙ୍ଗର ଶାମୁକା ।

ପୁଣିଥରେ ଦେଖାହେଲା,
ଶିବିକା ତୁମର ଯେବେ
ପଶୁଥିଲା ବାଦଶାହା ହାରେମ୍ ଭିତରେ ।
ଚାଲିଥିଲି ପାଶେ ପାଶେ ମୁଁ ତୁମ ପ୍ରହରୀ ।
ବୋର୍ଖା ଟେକି ଚାହିଁଥିଲ ହଠାତ୍ କାହିଁକି
ଚାରିଚକ୍ଷୁ ମିଶିଗଲା ନିମିଷକ ପାଇଁ ।

ବହୁକାଳ ପରେ
ଦେଖାହେଲା ଆଜ ଯେବେ ତୁମ ସାଥେ ପୁଣି ।
ମୁଁ ତୁମଙ୍କୁ ଚିହ୍ନିଗଲି ପ୍ରଥମ ପଲକେ,
ଚିହ୍ନିଗଲି ତୁମେ ମୋର ପ୍ରାଣପରିଚିତା ।
ଅନାୟାସେ ସେଥିପାଇଁ ଆପେ ଆପେ
ଉଠିଲି ମୁଁ କହି,

'ମୁଁ ତୁମଙ୍କୁ ଭଲପାଏ,
ତୁମେ ମୋର ଏକାନ୍ତ ନିଜର ।'
ତୁମେ କିଗୋ ଅନୁରାଗେ
ଘେନିବ ଏ ଅନୁରାଗ ମୋର ।
ନହେଲେ ମୁଁ କ୍ଳାନ୍ତ ନୁହେଁ
ଅପେକ୍ଷିବି ଜନ୍ମ ଜନ୍ମାନ୍ତରେ ।''

ଚିଠିଟି ପଢ଼ିସାରି ପତ୍ନୀଙ୍କୁ ଫେରାଇ ଦେଇ ଦେଇ କହିଲି, 'ମନେ ହେଉଚି, ଇଟ୍ସ୍ ଥ୍ରିଲିଂ, କ୍ରମଶଃ—ଏପରିକି ଆଗାମୀ ସଂଖ୍ୟାରେ ସମାପ୍ୟ ବୋଲି ମନେ ହେଉନି ।'

ସ୍ତ୍ରୀ ପ୍ରଚ୍ଛନ୍ନ ପ୍ରେମିକ ତରୁଣବାବୁଙ୍କ ଉଦ୍ଦେଶ୍ୟରେ ଗୁଡ଼ିଏ କଟୁ ବିଶେଷଣ ପୂର୍ଣ୍ଣ ମନ୍ତବ୍ୟ ପ୍ରକାଶ କଲେ ଓ ସୁଚରିତାର ସରଳତାର ପ୍ରଶଂସା କଲେ ।

୩

ଏହାର ପ୍ରାୟ ମାସକପରେ ସୁଚରିତାର ପରବର୍ତ୍ତୀ ପତ୍ର ଆସିଲା ।

ସୁଚରିତାର ପତ୍ର ପାଇଁ ଆମେ ଦୁହେଁ ଉତ୍ସୁକହୋଇ ଅପେକ୍ଷା କରିଥିଲୁ । ସୁଚରିତାର ପତ୍ରରେ କଣ ନୂତନ ବାର୍ତ୍ତା ଆଇପାରେ ଜାଣିବାକୁ ଉଭୟଙ୍କ ମନରେ ପ୍ରବଳ ଉତ୍କଣ୍ଠା । ଯଦିଓ କେହି କାହାପାଖରେ ସେହି କଥାଟା ପ୍ରକାଶ କରୁ ନଥିଲୁ ।

ସୁଚରିତାର ପତ୍ରରେ ଥିଲା ଏକ ବିସ୍ମୟକର ସମ୍ବାଦ । ତରୁଣବାବୁ ତାଙ୍କର ଜଣେ ବନ୍ଧୁପୁତ୍ର ସହିତ ସୁଚରିତାର ବିବାହ ପ୍ରସ୍ତାବ ଆଣିବା ପୂର୍ବରୁ ତାର ସମ୍ମତି ଗ୍ରହିଁଛନ୍ତି । ମୃତ ବନ୍ଧୁଙ୍କର ପୁତ୍ର ବର୍ତ୍ତମାନ ଆଇ, ପି, ଏସ୍ ଟ୍ରେନିଂରେ ଅଛନ୍ତି । ବନ୍ଧୁଙ୍କର ମୃତ୍ୟୁପରେ ସେ ହିଁ ସେମାନଙ୍କର ଅଭିଭାବକ କହିବା ଅତ୍ୟୁକ୍ତି ହେବ ନାହିଁ । ତେଣୁ ତାଙ୍କର ମନୋନୟନକୁ ସେ ବିନାଦ୍ୱିଧାରେ କେବଳ ନୁହେଁ,

ସାନନ୍ଦରେ ଗ୍ରହଣ କରିବ ଏ ବିଶ୍ୱାସ ତାଙ୍କର ଅଛି । ପିଲଟି ଦେଖିବାକୁ ରାଜପୁତ୍ର । ବିଦ୍ୟା ବିଷୟରେ କହିବା ନିଷ୍ପ୍ରୟୋଜନ । ତାର କୃତବିଦ୍ୟା ତାର ମାପକାଠି । ସ୍ୱଭାବରେ ସରଳ, ଶାନ୍ତ, ନିରାଡ଼ମ୍ବର ଓ ନିରହଙ୍କାର । ଯୌତୁକର ପ୍ରଶ୍ନ ନାହିଁ ।

ଚିଠି ପଢ଼ିସାରି ମୁଁ ଓ ନମିତା ପରସ୍ପରକୁ ଗ୍ୱହିଁ ରହିଲୁ । ଉଭୟେ ନିର୍ବାକ୍ । ତାର କାରଣ ଆମ ମନ ଭିତରେ ଆମେ ଘଟଣାର ପ୍ରବାହକୁ ଯେପରି ଆଙ୍କିଥିଲୁ, ବାସ୍ତବରେ ତାହା ଘଟି ନଥିଲା । ନମିତା ମୋ ସହିତ ପ୍ରଥମେ ଏକମତ ନଥିଲେ ମଧ ପରେ ପ୍ରାୟ ମୋ କଥାକୁ ଅସ୍ୱୀକାର କରି ପାରୁ ନଥିଲେ । ମୁଁ ତାଙ୍କୁ କହିଥିଲି, ତରୁଣବାବୁ ଏକ ଧପ୍‌ପାବାଜ ଲୋକ । ସେ ସୁଚରିତାର ସରଳତାର ସୁଯୋଗ ନେଇ ତା'ସହିତ ଅବୈଧ ଦେହ ସମ୍ପର୍କ ପ୍ରତିଷ୍ଠା କରିବାକୁ ଗ୍ୱହାନ୍ତି । 'ଆଗରୁ କେଉଁଠି ଦେଖିଲି ପରି ଲାଗୁଚି' ସେହି ଧପ୍‌ପାବାଜିର ଗୋଟାଏ ଅସ୍ତ୍ର । କିନ୍ତୁ ମୋର ଭୟ ସୁଚରିତା ସେ ଲୋକକୁ ଚିହ୍ନିପାରି ନାହିଁ । ତେଣୁ ସେ ତାଙ୍କୁ ପ୍ରେମ କରି ବସିବା ଅସମ୍ଭବ ନୁହେଁ । ସେଥିପାଇଁ ତାକୁ ସାବଧାନ କରେଇ ଦେବା ତାର ବାନ୍ଧବୀ ଭାବରେ ନମିତାର ପ୍ରଧାନ କର୍ତ୍ତବ୍ୟ । ନମିତା ତରୁଣବାବୁଙ୍କ ସମ୍ପର୍କରେ ମୋର ଧାରଣା 'ହୁଏତ ଠିକ' ବୋଲି ମନେ କରୁଥିଲେ । ତାଙ୍କର ବୁଦ୍ଧିମତୀ ବାନ୍ଧବୀ ପ୍ରେମ କରିବାପରି ଭୁଲ୍ କରି ନପାରେ, ଏ ବିଷୟରେ ସେ ନିସନ୍ଦେହ ଥିଲେ ।

ସୁଚରିତାର ପତ୍ର ପାଠପରେ ମୁଁ କହିଲି, "ତରୁଣବାବୁ ତାଙ୍କର ଚମତ୍କାର ଗ୍ୱଲ୍‌ଟି ଦେଖାଇଲେ ।"

ନମିତାର ପ୍ରଶ୍ନ, "ମାନେ"

"ମାନେଟା ସହଜ । ସିନେମାର ନାୟିକା କରି ଦେବାକୁ କହି ଯେପରି ସୁନ୍ଦରୀ ତରୁଣୀ ଝିଅମାନଙ୍କୁ ପଥଭ୍ରଷ୍ଟ କରିବାର ପନ୍ଥା କେହି କେହି ଅବଲମ୍ବନ କରନ୍ତି, ଆଇ,ପି,ଏସ୍ ବରର ଲୋଭ ଦେଖାଇ ସେହି ଭଳି ସ୍ୱାର୍ଥ ସାଧନ କରିବାକୁ ତରୁଣବାବୁ ଆଗେଇଛନ୍ତି । ଏହାପରେ କନ୍ୟାଦେଖା ପାଇଁ ସୁଚରିତାକୁ ଦିଲ୍ଲୀ ଯିବାକୁ ହେବ । ଦିଲ୍ଲୀଗଲେ ତରୁଣବାବୁଙ୍କ ଘରେ ରହିବାକୁ ହେବ । ଦିଲ୍ଲୀ ଓ ତାର ଆଖପାଖ ସ୍ଥାନ ବୁଲି ଦେଖିବା ପାଇଁ କିଛିଦିନ ଅବସ୍ଥାନ କରିବାକୁ ହେବ । ଅର୍ଥାତ୍ ସୁଚରିତାର ସାନ୍ନିଧ୍ୟ ପାଇଁ ପ୍ରଶସ୍ତ ଅବକାଶ । ତାପରେ ଏକ ଦୁର୍ବଳ ମୁହୂର୍ତ୍ତରେ ସୁଚରିତାକୁ ଗ୍ରାସ କରିବାର ପ୍ଲାନ୍ । ସୁଚରିତା ଯଦି ପ୍ରକୃତରେ ପ୍ରେମରେ ପଡ଼ିଯାଇଥାଏ, ତାହାହେଲେ ତ ସେଇ ପ୍ଲାନ୍ ଅତି ସହଜରେ ସାଧିତ ହୋଇଯିବ ।"

ନମିତା ମୋ କଥା ବିଶ୍ୱାସ କଲେ, ଓ ଭୟରେ ଶିହରିତ ହେଲେ ।

କହିଲେ "ସୁଚିତ୍ରାକୁ ରକ୍ଷା କରିବାର ଉପାୟ ?"

ମୁଁ କହିଲି, "ସ୍ପଷ୍ଟ ଲେଖିଦିଅ, ସେ ଏ ବିବାହରେ ସମ୍ମତ ନହେଉ ।"

ବୋଧହୁଏ ନମିତା ତାହାହିଁ କଲେ ।

କିନ୍ତୁ ଆମ ଦୁହିଁଙ୍କୁ ବିସ୍ମିତ କରି ୧୫ ଦିନ ପରେ ସୁଚିତ୍ରାର ବିବାହପାଇଁ ନିମନ୍ତ୍ରଣ ପତ୍ର ଆସି ପହଞ୍ଚିଲା । ବର ନିଜେ ଆସି କନ୍ୟାକୁ ଦେଖିଯିବା ପରେ ବିବାହ ସ୍ଥିରୀକୃତ ହୋଇଗଲା ଓ ନିକଟତମ ତିଥିରେ ବିବାହ ସମ୍ପନ୍ନ ହେବାର ବ୍ୟବସ୍ଥା ବି ହେଲା ।

ଏ ସଂବାଦ ଆମ ଦୁହିଙ୍କୁ ଏତେ ମର୍ମାହତ କଲା ଯେ ଆମେ ଦୁହେଁ ଗୋଟିଏ ଶୁଭେଚ୍ଛା ଟେଲିଗ୍ରାମ ପଠାଇବା ଛଡ଼ା ଆଉକିଛି କରିବା ଉଚିତ ମନେକଲୁ ନାହିଁ । ସୁଚିତ୍ରାର ସାନୁନୟ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ନମିତା ବିବାହରେ ଯୋଗ ଦେବାକୁ ଗଲେ ନାହିଁ ।

ମୁଁ ଆଉ ଏ ବିଷୟରେ ଅଧିକ ଜାଣିବାପରି ଘଟଣା ଘଟିବାର ଆଶା କରି ନଥିଲି । ତରୁଣବାବୁ ଯେ ସୁଚିତ୍ରା ସହିତ ଏକ ଅବୈଧ ସମ୍ପର୍କ ରଖିବା ମାନସରେ ଏ ବିବାହ ଯୋଗାଡ଼ କରିଛନ୍ତି, ଏ ବିଷୟରେ ମୋର ସନ୍ଦେହ ନଥିଲା । ସୁଚିତ୍ରାର ସ୍ୱାମୀ ଅତିଶୟ ଶାନ୍ତ ସରଳ ଅର୍ଥାତ୍ ଏକ ଗୋବରଗଣେଶ, ବୈଷୟିକ ଜ୍ଞାନହୀନ ନିର୍ବୋଧ ତଥା ସୁବାଧ୍ୟ ବନ୍ଧୁପୁତ୍ର ହୋଇଥିବ ଏ ବିଷୟରେ ମଧ୍ୟ ମୋର ଧାରଣା ଥିଲା ଅତି ସ୍ପଷ୍ଟ । ବିଚ୍ଚାରୀ ସୁଚିତ୍ରା ପାଇଁ ମୋର ଦୁଃଖ ହେଉଥିଲା ।

ବାହାଘରକୁ ନ ଯାଇ ପତ୍ନୀ ମନ କଷ୍ଟ କରୁଥିଲେ ଏବଂ ସୁଚିତ୍ରାର ପତ୍ର ପ୍ରତ୍ୟାଶାରେ ଥିଲେ । ସେ ଅବଶ୍ୟ ଭାବିଥିଲେ, ସୁଚିତ୍ରା ପତ୍ର ଲେଖିବ ତାର ବାସର ରାତିର ଅନୁଭୂତି ବର୍ଣ୍ଣନା କରି ସେ ନିଜେ ଯେପରି ଲେଖିଥିଲେ ଅତୀତରେ । ତେଣୁ ଯଥାସମୟରେ ସୁଚିତ୍ରାର ପତ୍ରଟି ପାଇବା ସଂଗେ ସଂଗେ ସେ କହି ପକେଇଲେ, ଏ ଚିଠି ତୁମେ ପଢ଼ି ପାରିବ ନାହିଁ । ଏ ପତ୍ର ଗୋପନୀୟ । ଏଥିରେ ଯାହା ଲେଖାଅଛି ମୁଁ ଜାଣେ ।'

ନମିତା ଚିଠିଟିକୁ ନେଇ ଅନ୍ୟଘରକୁ ଚାଲିଗଲେ । କିଛି ସମୟ ପରେ ପତ୍ର ପାଠ ଶେଷ କରି ମୋ ପାଖକୁ ଆସି ମୋ ହାତକୁ ଚିଠିଟିକୁ ବଢ଼ାଇ ଦେଲେ ।

ଚିଠିଟି ପଢ଼ିବାକୁ ମୁଁ ଉତ୍ସୁକତାର ସହିତ ଅପେକ୍ଷା କରିଥିଲି । ସୁଚିତ୍ରାର ଚିଠିଟି ଥିଲା ଏହିପରି ।

"ପ୍ରିୟ୍ନ ନମିତା,

ତୁ ବାହାଘରକୁ ଆସିଲୁ ନାହିଁ । ତୋର କଥା ରଖିଲି ନାହିଁ ବୋଲି ରାଗିଲୁ ବୋଧହୁଏ । ବାହାଘର ବନ୍ଦ କରିବାପରି ଶକ୍ତି ମୋର ନ ଥିଲା । ଭଦ୍ରଲୋକ ଉଭୟପକ୍ଷର କର୍ତ୍ତୃତ୍ୱ କରି ସବୁ ବ୍ୟବସ୍ଥା କରି ପକାଇଲେ । ତାଙ୍କ ନିଷ୍ପତ୍ତିକୁ ମାନି ନେବା ବ୍ୟତୀତ ବାପାଙ୍କର ମଧ୍ୟ କିଛି କରିବାର ନଥିଲା । ତାଙ୍କର ଏହି ଅତ୍ୟଧିକ ଆଗ୍ରହ ସତରେ ମତେ ବଡ଼ ଚିନ୍ତାଗ୍ରସ୍ତ କରି ପକେଇଥିଲା । ତୋର ସତର୍କ ବାଣୀ ମୋ ମନ ଭିତରେ ରହି ମତେ ସବୁବେଳେ ଆତଙ୍କିତ କରୁଥିଲା । କି ଚକ୍ରାନ୍ତ ଭିତରକୁ ମତେ ସେ ଟାଣି ନେଉଛନ୍ତି ଭାବି ମୁଁ ମନେ ମନେ ଭୟଭୀତ ହେଉଥିଲି । ତଥାପି ମୋ ଭିତରେ ମୁଁ ଏଇ ସାହସ ଠୁଳକରି ରଖିଥିଲି ଯେ ଭଦ୍ରବ୍ୟକ୍ତି ଯଦି କେବେ ତାଙ୍କର ସେ ରୂପ ପ୍ରକାଶ କରନ୍ତି, ସେ ଦିନର ମୋର ରୁଦ୍ରାଣୀ ରୂପରେ ମୁଁ ତାଙ୍କୁ ସଂହାର କରିବାକୁ ମଧ୍ୟ ପଶ୍ଚାଦ୍‌ପଦ ହେବିନାହିଁ ।

ବାହାଘର ଖୁବ୍ ଭଲରେ ଶେଷ ହୋଇଗଲା । ତା ପରେ ସେ ମୋ ସହିତ ଦେଖାକଲେ ।

ମୁଁ ନୀରବରେ ବସିଥିଲି । କହିଲେ, 'କିଣ ଚୁପ୍‌ଚାପ୍ କାହିଁକି? ମନରେ କିଛି କ୍ଷୋଭ ଅଛି କି ? ବର ପସନ୍ଦ ହୋଇଛି ତ ? ମୋର ଉତ୍ତରକୁ ଅପେକ୍ଷା ନରଖି ସେ କହି ଚାଲିଲେ, 'ନବେନ୍ଦୁ ଚମତ୍କାର ପିଲା । ଖୁବ୍ ସରଳ । ମୋ କଥାରେ ଉଠେ ବସେ ।"

ତାଙ୍କର ଏଇ କଥା ଶୁଣି ମୋ ଛାତି ଭିତରେ ଯେପରି ଗୋଟାଏ ଧକ୍କା ଲାଗିଲା ।

ସେ କହିଲେ, 'ମୋର ବିଶ୍ୱାସ ତୁମେ ତାକୁ ପାଇ ସୁଖୀ ହେବ ଏବଂ ସେ ମଧ୍ୟ ତୁମକୁ ପାଇ ସୁଖୀ ହେବ ।'

ମୁଁ ମନେ ମନେ ଭାବିଲି ତାଙ୍କୁ ମୂଳରୁ ସତର୍କ କରେଇ ଦେବା ଉଚିତ ଯେ ସେ ଏଇ ବିବାହରୁ କିଛି ଅବୈଧ ଫାଇଦା ଉଠାଇ ପାରିବେ ନାହିଁ । ସେ ବିଷୟରେ ମୁଁ ସଚେତନ ଓ ସାବଧାନ ।

ମୁଁ ଚେଷ୍ଟା କହିଲି, 'ଆଚ୍ଛା, ଆପଣ ଏତେ କଷ୍ଟକରି ଏ ଯେଉଁ ବିବାହ କରେଇଲେ, ଏଥିରେ ଆପଣଙ୍କର ଲାଭ ହେଲା କଣ ?'

ସେ ହସିଲେ କହିଲେ, 'ଲାଭ ? ମୁଁ କଣ ବାଣିଜ୍ୟ ବ୍ୟବସାୟ କରୁଛି ଯେ ଲାଭ କ୍ଷତିର ହିସାବ ରଖିବି !'

'ତାହାହେଲେ ଏତେ ଶ୍ରମ କାହିଁକି ?' ମୁଁ ପଚାରିଲି ।

'ଏହା ମୋର ଶ୍ରମ ନୁହେଁ ସୂଚନା, ଏହାମୋର ସାଧନା, ପ୍ରେମର ସାଧନା ।'

ତାଙ୍କ କଥା ଭିତରେ ଏକ ରହସ୍ୟ କାମନାର ଇଙ୍ଗିତ ଥିବାପରି ମତେ ଲାଗିଲା ଏବଂ ମୁଁ ଆତଙ୍କିତ ହେଲି । ତେଣୁ ସ୍ୱରକୁ ଟିକିଏ ଦୃଢ଼ କରି କହିଲି, 'ଅଜା, ସେଇ ଶବ୍ଦଟା ଆପଣଙ୍କ ମୁଖରେ ଶୋଭା ପାଉନି । ତା ବ୍ୟତୀତ ମୁଁ ବର୍ତ୍ତମାନ କୁଳବଧୂ । ଆଉ ଆପଣ ··· ···,

ସେ ଅବିଚଳିତ କଣ୍ଠରେ କହିଲେ, 'ମୁଁ ଏକ ପକ୍ୱକେଶ ବୃଦ୍ଧ । ମୋର ପତ୍ନୀ ପୁଅ କନ୍ୟା ଅଛନ୍ତି—ଏଇୟା ତ ! ମୁଁ କଣ ତୁମକଥାରୁ ଏଇୟା ବୁଝିବି ଯେ ମୁଁ ଯଦି ବୃଦ୍ଧ ନହୋଇ ତରୁଣ ହୋଇଥାନ୍ତି ତୁମେ ମୋ ସହିତ ପ୍ରଣୟ ସଂପର୍କ ରଖିବାକୁ କୁଣ୍ଠିତ ହୋଇନଥାନ୍ତି ।''

ମୋ କଥାଟା ମୋ ପାଖକୁ ବୁମେରାଂ ପରି ଫେରି ଆସିବାଭଳି ଲାଗିଲା । କିନ୍ତୁ ତାଙ୍କ ପ୍ରଶ୍ନର ଉତ୍ତର ସ୍ୱତଃ ମୋ ମୁହଁରୁ ବାହାରିଆସିଥିଲା । ମୁଁ କହି ଉଠିଲି 'ନା, ନା, କଦାପି ନୁହେଁ ।'

'ଚମତ୍କାର । ମୁଁ ଜାଣେ ତୁମେ ତାହାହିଁ କହିବ । ତୁମେ ତୁମର ଆତ୍ମ ସମ୍ମାନକୁ, ତୁମର ନାରୀତ୍ୱକୁ, ତୁମର ପ୍ରେମକୁ କଦାପି ସହଜରେ ସମର୍ପଣ କରିଦେବ ନାହିଁ ମୁଁ ଜାଣେ । ସେଥିପାଇଁ ମୁ ତୁମକୁ ବେଶୀ ଭଲପାଏ ।

ଆଉ କିଛି କଥା କହିବାକୁ ମୋ ମୁଖରେ ଭାଷା ନଥିଲା । ସେ ପୁଣି କହି ଚାଲିଲେ । 'ମୁଁ ତୁମକୁ କହିଲି, ଏହା ହେଉଛି ମୋର ପ୍ରେମର ସାଧନା । ଜଣେ ପ୍ରକୃତରେ ପ୍ରେମ କରିପାରେ, ଯେତେବେଳେ ସେ ନିଜଠାରୁ ନିଜକୁ ମୁକ୍ତ କରିପାରେ । ନିଜକୁ ସୁଖୀ କରିବା ନୁହେଁ, ଅନ୍ୟ ଜଣକୁ ସୁଖୀ କରିବା ହେଉଛି ପ୍ରକୃତ ପ୍ରେମ । ମୋର ଆନନ୍ଦ ହେଉଛି ତୁମର ଆନନ୍ଦରେ ଅଭିଭୂତ ହେବା । ବହୁତ ଦିନ ତଳେ ଗୋଟିଏ ପତ୍ରିକାରେ ଗୋଟିଏ କବିତା ପଢ଼ିଥିଲି । ତାର କେତୋଟା ଲାଇନ୍ ମନେପଡୁଛି ।

'ତୁମେ ସୁଖୀ ହୁଅ
  ତୁମ ଇଚ୍ଛା ପୂର୍ଣ୍ଣ ହେଉ
    ତୁମ ସ୍ୱପ୍ନ ସତ୍ୟ ହେଉ,
      ତୁମେ ସୁଖୀ ହୁଅ ।

ମୁଁ ଖୁଣ୍ଡେଁ ତୁମର ପାଇଁ
ଅନୁରାଗେ କରିବାକୁ ଆତ୍ମ ବିସର୍ଜନ
ତୁମ ପାଇଁ ବହିବାକୁ ସବୁ କ୍ଳେଶ, ସବୁ ବ୍ୟଥା
ଦେବାପାଇଁ ତୁମ ମନେ ଆନନ୍ଦ ପରମ

ଆଗୋ ସଖୀ, ପ୍ରିୟସଖୀ
ପ୍ରାଣ ସଖୀ, ହୃଦୟର ସଖୀ,
ସୁଖ ମୋର ତୁମକୁହିଁ କରିବାରେ ସୁଖୀ ।"

"ବୁଝିଲ ସୁଚରିତା, ତୁମକୁ ପରମ ସୁଖୀ ଭାବରେ ଦେଖିବାହିଁ ମୋର ପ୍ରେମ । ତୁମେ ଯଦି ଜୀବନରେ କେବେ ହୃଦୟ ଭିତରେ ବୋଧ କରିବ ଯେ ମୁଁ ତୁମକୁ ଜୀବନର ଶ୍ରେଷ୍ଠ ସୁଖ ଟିକକ ଦେଇ ପାରିଚି, ତାହାହିଁ ହେବ ମୋ ପ୍ରେମର ପ୍ରକୃଷ୍ଟ ପ୍ରତିଦାନ । ତୁମେ ବର୍ତ୍ତମାନ ନୂଆ ଜୀବନ ଗଢିବାକୁ ଯାଉଛ । ମୁଁ ତୁମପାଇଁ ଅସରନ୍ତ ଶୁଭେଚ୍ଛା, ଶୁଭକାମନା ଦେଇ ଯାଉଛି ।"

ତାଙ୍କ କଥା କେବଳ ଶୁଣିବା ବ୍ୟତୀତ ମୋର ଆଉ କହିବାର କିଛି ନଥିଲା ।

ବରକନ୍ୟା ବିଦାୟ ପୂର୍ବରୁ ସେ ଚାଲି ଯାଇଥିଲେ । ତାଙ୍କର ଜରୁରୀ କାମ ଥିଲା ବୋଲି ତାଙ୍କର ଆଗରୁ ଚାଲିଯିବାର କଥା ଥିଲା ।

ଯିବା ପୂର୍ବରୁ କହିଗଲେ, ସୁଚିତା, ମୁଁ ଯାଉଚି, ପୁଣି ଦେଖା ହେବ ।

ପୁଣି ଥରେ ଦେଖା ହେବ
ଏ ନୀଳ ଆକାଶ ତଳେ
ଏ ଧରାର ସବୁଜ ମାଟିରେ ।
ଅବା ଅନ୍ୟ ଉପଗ୍ରହେ
କେବେ କେଉଁ ଦୂର ଜନ୍ମାନ୍ତରେ ।
ଚାହିଁଥିବ ଯେତେବେଳେ ବିସ୍ମୟରେ
ମତେ ତୁମେ, ତୋଳି ଦେଇ ତୁମର ଚକ୍ଷୁ ।
ପଚାରିବ ସେତେବେଳେ
ପାରୁଚ ତ ଚିହ୍ନି ମତେ ରୂପସୀ ସୁନ୍ଦରୀ ।"

"ତାଙ୍କର କାବ୍ୟକତା, ରସିକତା ମତେ ଭଲ ଲାଗିଲାନି କହିଲେ ଭୁଲ ହେବ ।

ସେ ଚାଲିଗଲେ !

ତାର ଦୁଇଦିନ ପରେ, ସେହି ଏଶ୍ବର୍ଯ୍ୟପୂର୍ଣ୍ଣ, ରଙ୍ଗମୟ ବାସର ରାତ୍ରିର ଅବଶେଷରେ ଆମପାଇଁ ଅପେକ୍ଷା କରି ରହିଥିଲା ଏକ ମର୍ମନ୍ତୁଦ ଦୁଃସମ୍ବାଦ —ସେ ଆଉ ନାହାନ୍ତି । ହଠାତ୍ ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦହୋଇ ଯାଇଥିଲା ତାଙ୍କର । ଆମର ବାସର ରାତ୍ରିର ମଧ୍ୟ ଭାଗରେ ।

"ନମିତା, ଆଜିକୁ ଚାରିଦିନ ହେଲାଣି, ଆମେ ଦୁହେଁ କେବଳ କାନ୍ଦୁଚୁ । କେବଳ କାନ୍ଦୁଚୁ । ଇଏ ତ କାନ୍ଦୁଛନ୍ତି ପିଲାଦିନର ପୁଣ ଟିଏ ପରି । ତଥାପି ହୃଦୟ ଶାନ୍ତ ହେଉନି । ମତେ ଇଏ ବହୁତ ସାନ୍ତ୍ୱନା ଦେଉଛନ୍ତି । କିନ୍ତୁ ମୁଁ ଟିକିଏ ବି ସାନ୍ତ୍ୱନା ପାଉନାହିଁ । ସେ ମତେ ଠକି ଦେଇ ଚାଲିଗଲେ । ସେ ମତେ ଋଣୀ କରି ଦେଇ ଚାଲିଗଲେ । ମୁଁ ତାଙ୍କୁ କିଛି ଦେଇ ପାରିନାହିଁ । ଭଲ କରି କଥା ବି କହିନାହିଁ । ତାଙ୍କୁ ଅଯଥାରେ ଭୟ କରିଚି । ମାରବରେ ଘୃଣା କରିଚି । ତାଙ୍କୁ ଭୁଲ୍ ବୁଝିଛି । ତାଙ୍କର ମହାନତାର ଅପମାନ କରିଛି । ମୁଁ ଜାଣେ ମୋର କ୍ଷମା ନାହିଁ । ନମିତା, ମୁଁ ତାଙ୍କୁ "କହିନାହିଁ; କାହାକୁ କେବେ କହି ପାରିବି ନାହିଁ । ମୋର ଅନ୍ତରର କଥା ମତେ ବୁକୁ ଭିତରେ ଚାପିଧରି ରଖିବାକୁ ହେବ ସାରା ଜୀବନ । କିନ୍ତୁ ନକହିଲେ ବେଦନାରେ ମୋ ଛାତି ଫାଟିଯିବ । ନମିତା, ମୁଁ ସେଥିପାଇଁ ତୋ ପାଖରେ ଅନ୍ତତଃ ମନ ଖୋଲି କହି ଦେଉଛି—ମୁଁ ତାଙ୍କୁ ଭଲ ପାଉଥିଲି ।ମୁଁ ତାଙ୍କୁ ପ୍ରେମ କରି ବସିଥିଲି ବୋଧ ହୁଏ ସେହି ପ୍ରଥମ ଦିନରୁ । ଆଜି ମନେ ହେଉଚି ସେ ଚାହିଁଥିଲେ ମୁଁ ତାଙ୍କୁ ବିବାହ କରିଥାନ୍ତି । କିନ୍ତୁ ଆଜି ଏକଥା ମୁଁ କାହାକୁ କହିବି ? ତାଙ୍କୁ ଭଲପାଏ ବୋଲି ଯଦି କେବେ ପରୋକ୍ଷରେ ଜଣାଇ ପାରିଥାନ୍ତି ଆଜି ମୋର ଏତେ କଷ୍ଟ ହୁଅନ୍ତା ନି ।

ମତେ ଏ ଜନ୍ମ ସାରା ଏଇ ଦୁଃଖର ଭାର ବହନ କରିବାକୁ ପଡ଼ିବ । ସତରେ କଣ ପରଜନ୍ମ ଅଛି ? ସତରେ କଣ ଆର ଜନ୍ମରେ ମୋର ପ୍ରିୟତମଙ୍କ ସହିତ ମୋର ଦେଖା ହେବ ! ସତରେ କଣ ଦେଖା ହେଲେ ମତେ ସେ ଚିହ୍ନି ପାରିବେ ? ମୁଁ ତାଙ୍କୁ ଚିହ୍ନି ପାରିବି ?

ନମିତା, ତୁ ଭାବୁଥିବୁ ମୋର ମୁଣ୍ଡ ଖରାପ ହୋଇ ଯାଇଛି । ମୁଁ କୁଳବଧୂ, ସ୍ୱାମୀର ସ୍ତ୍ରୀ—ତା ସତ୍ତ୍ୱେ ଏପରି ଭାବନା ମୋ ପକ୍ଷରେ ଶୋଭନୀୟ ନୁହେଁ । କିନ୍ତୁ ମୁଁ ଯେ ପ୍ରେମିକା । ମୁଁ ତାଙ୍କର ପ୍ରେମିକା, ଏକଥା ମୁଁ ଭୁଲିବି କିପରି ?

ନମିତା, ତୁ ମୋର ଅନ୍ତରତମ ବନ୍ଧୁ । ତୋ ପାଖରେ ମୋର ଗୋପନୀୟ ବୋଲି କିଛି ନାହିଁ । ତୋ ପାଖରେ ମୁଁ ହୃଦୟ ଖୋଲି ଦେଇଛି । ଆତ୍ମ ପ୍ରକାଶ କରି ଟିକିଏ ଶାନ୍ତି ପାଇବି ବୋଲି । ଏ ଚିଠି ତୁ କାହାକୁ ଦେଖାଇବୁ ନାହିଁ । ଚିରି ଦେବୁ । ମୋ କଥା କାହାକୁ କହିବୁ ନାହିଁ—ତୋତେ ମୋ ରାଣ ।"

( ୫ )

ଚିଠିଟି ପଢ଼ି ସାରି ମୁଁ ନମିତାଙ୍କୁ ଚାହିଁଲି । ଏହା ଭିତରେ ନମିତାଙ୍କ ଆଖିରୁ ଲୁହଧାର ବହି ଚାଲିଥିଲା । ମୁଁ ତାଙ୍କ ପାଖକୁ ଉଠିଯାଇ କହିଲି, 'ତୁମେ କାହିଁକି କାନ୍ଦୁଚ ? ସୁଚିତ୍ରାର ଅବୋଧତାକୁ ଉପହାସ କରାଯାଇପାରେ । ସେ ସହାନୁଭୂତିର ଯୋଗ୍ୟ ନୁହେଁ ।"

ନମିତା ଆଖିରୁ ଲୁହପୋଛୁ ପୋଛୁ କହିଲେ, 'ନାଁ, ତୁମେ ତାର ଦୁଃଖ ବୁଝିପାରିବ ନାହିଁ । ହୃଦୟର ପ୍ରେମ ଯଦି ଜଳପରି ବହି ନଯାଇ ବରଫ ପରି ପଥର ହୋଇଯାଏ, ପ୍ରେମ ଯଦି ଦୁଃଖରେ ପରିଣତ ହୋଇଯାଏ, ସେତେବେଳେ ସେ ଦୁଃଖରୁ ଆଉ ଏ ଜନ୍ମରେ ମୁକ୍ତି ମିଳେନା । ବାସ୍ତବରେ ସୁଚିତ୍ରା, ତା ଦୁଃଖ ମୁଁ ବୁଝି ପାରୁଚି ।"

ମୁଁ ନମିତାଙ୍କୁ ହତଭମ୍ବ ହୋଇ ଚାହିଁ ରହିଲି । ତାଙ୍କ କଥା ଓ କଣ୍ଠ ସ୍ୱରରେ ସୁଚିତ୍ରା ପ୍ରତି ସହାନୁଭୂତି ଛଡ଼ା ଆଉ କିଛି ରହିଥିବା ପରି ମତେ ଲାଗିଲା ।

ସୁଚିତ୍ରାର ଉପଲକ୍ଷରେ ନମିତା କଣ ନିଜ କଥା କହି ପକାଇଛନ୍ତି ? ମୋ ବକ୍ଷଭିତରେ ମୁଁ ଗୋଟାଏ ପିନ୍ ଫୋଡ଼ି ହୋଇ ଯିବାପରି ତୀବ୍ର ଯନ୍ତ୍ରଣା ଅନୁଭବ କଲି । ସେ ଯନ୍ତ୍ରଣା ପ୍ରକାଶ କରିବା ପରି ଭାଷା ମୋର ନଥିଲା ।

୫ । ୭ । ୭୭

ଭୁବନେଶ୍ୱର

●

# ସତ୍ୟମେବ ଜୟତେ

"ମୁଁ ଲୋକମାନଙ୍କର ସେବାକୁ ଜୀବନର ବ୍ରତ ବୋଲି ଗ୍ରହଣ କରି ନେଇଛି । ମୁଁ ମୋର ଶକ୍ତି ଅନୁସାରେ ଏଇ ଭାରତ ମାତାର ସେବା କରିବି ; ଉତ୍କଳ ଜନନୀର ସେବା କରିବି; ମୋର ଏଇ ଜନ୍ମମାଟି ନିଜଗଡର ସେବା କରିବି । ସେଥିପାଇଁ ମୁଁ ଆପଣ ମାନଙ୍କର ଦ୍ୱାରସ୍ଥ ହୋଇଛି । ଗତ ଦୁଇଟି ନିର୍ବାଚନରେ ଆପଣମାନେ ମତେ ଆପଣ ମାନଙ୍କର ପ୍ରତିନିଧି ଭାବରେ ନିର୍ବାଚିତ କରି ପଠାଇଛନ୍ତି । ଆପଣମାନଙ୍କର ସମର୍ଥନ ଓ ଶୁଭେଚ୍ଛା ପାଇ ମୁଁ ମନ୍ତ୍ରୀ ହୋଇଛି। ମୋର ସବୁ ଶକ୍ତି ଦେଇ ମୁଁ ଆପଣମାନଙ୍କର ସେବା କରି ଆସିଛି । ସେଇ ସୁଯୋଗ ମତେ ଦେଇଥିବାରୁ ମୁଁ ଆପମୋନଙ୍କ ପାଖରେ କୃତଜ୍ଞ । ଶୁଭାକାଂକ୍ଷୀ ବନ୍ଧୁମାନଙ୍କର ଅନୁରୋଧକୁ ଉପେକ୍ଷା କରି ନପାରି, ଆପଣ ମାନଙ୍କର ସାହାଯ୍ୟ ଓ ସହଯୋଗ ଉପରେ ନିର୍ଭର କରି ମୁଁ ପୁଣି ଥରେ ଏଇ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଛି । ମୋର ବିଶ୍ୱାସ ଆପଣମାନେ ମତେ ପୁଣି ନିର୍ବାଚନରେ ଜୟଯୁକ୍ତ କରେଇବେ । ଏବଂ ଅଧିକ ଉତ୍ସାହରେ ଆପଣମାନଙ୍କର ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିବାକୁ ମତେ ସୁଯୋଗ ଦେବେ ।"

ଉପେନ୍ଦ୍ର ମହାନ୍ତିଙ୍କର କଥା ନ ସରୁଣୁ ସଭା କରତାଳିରେ ଶବ୍ଦାୟମାନ ହେଲା । ତା ସହିତ ସ୍ଲୋଗାନ 'ଉପେନ୍ଦ୍ର ମହାନ୍ତି ଜିନ୍ଦାବାଦ' 'ଉପେନ୍ଦ୍ର ମହାନ୍ତି ଆମର ନେତା—ଆମର ନେତା" ଇତ୍ୟାଦି ।

କୋଳାହାଳ ବନ୍ଦ ହେବାପରେ ଉପେନ୍ଦ୍ର ମହାନ୍ତି ପୁଣି ତାଙ୍କର ଭାଷଣ ଆରମ୍ଭ କଲେ । ଆପଣମାନେ ଜାଣନ୍ତି, ମୋ ବିରୁଦ୍ଧରେ ଗୋଟିଏ ଚକ୍ରାନ୍ତ ଚାଲିଛି । ମୋ ପଛରେ ଆପଣ ମାନଙ୍କର ଅକୁଣ୍ଠ ସମର୍ଥନ ଅଛି ଜାଣି, ମୋତେ

ପରାଜିତ କରିବାର କୌଣସି ଉପାୟ ନଥିବା ଜାଣି, ମୋର ବିରୁଦ୍ଧ ଗୋଷ୍ଠୀ ନାନା ପ୍ରକାର ଚକ୍ରାନ୍ତ କରି ଚାଲିଛନ୍ତି। ମୁଁ ଯେଉଁମାନଙ୍କର ଉପକାର କରିଛି, ଯେଉଁ ମାନଙ୍କୁ ମୁଁ ସବୁବେଳେ ସାହାଯ୍ୟ କରିଛି, ସେହିମାନେ ମୋର ବିରୁଦ୍ଧରେ ଠିଆ ହୋଇଛନ୍ତି। ଏଭଳି ଅକୃତଜ୍ଞତାର ଉଦାହରଣର ତ ଯୁଗେ ଯୁଗେ ଅଭାବ ନାହିଁ। ଆପଣମାନେ ରାମାୟଣରେ, ମହାଭାରତରେ, ଭାଗବତରେ, ବାଇବେଲ୍‌ରେ କୋରାନ୍ ରେ, ସବୁ ବଡ ବଡ଼ ଗ୍ରନ୍ଥରେ ଏହିପରି ଅକୃତଜ୍ଞ ଲୋକମାନଙ୍କର କଥା ଜାଣିବାକୁ ପାଇବେ। କିନ୍ତୁ ସେମାନେ କେବେ ସଫଳ ହୋଇ ନାହାନ୍ତି। ଏବେ ବି ସଫଳ ହୋଇ ପାରିବେ ନାହିଁ। ଯେତେଦିନ ପର୍ଯ୍ୟନ୍ତ ଆପଣମାନେ ମୋ ପଛରେ ଅଛନ୍ତି, ମୁଁ ସେହି କୁଚକ୍ରୀମାନଙ୍କୁ ତିଳେମାତ୍ର ଖାତିର୍ କରିବି ନାହିଁ। ମୁଁ ଜାଣେ ସେମାନେ ଆପଣମାନଙ୍କର ବଜ୍ର ମୁଷ୍ଟିରେ ଧୂଳିସାତ୍ ହୋଇଯିବେ। ଭୋଟ ଫଳାଫଳ ବାହାରିବାପରେ ସେମାନେ ଲାଙ୍ଗୁଡ଼ ଜାକି ପଳାଇଯିବେ। ସେମାନଙ୍କ ଭିତରୁ ଅନେକେ ଆସି ପୁଣି ମୋ ପାଖରେ କ୍ଷମା ମାଗିବେ, ମୋ ଠାରୁ ସାହାଯ୍ୟ ଚାହିଁବେ। ଆପଣମାନେ ତ ଜାଣନ୍ତି ମୁଁ ଜଣେ ଉଦାର ଲୋକ। ମୁଁ ଏପରି ଅନେକ ଲୋକଙ୍କୁ କ୍ଷମା କରିଛି, ପୁଣି ହୁଏତ ସେମାନଙ୍କୁ କ୍ଷମା କରିଦେବି—"

"ନା, ନା, ନା,—ସେମାନଙ୍କୁ କ୍ଷମା ଦିଆଯିବ ନାହିଁ। ବିରୁଦ୍ଧ ଗୋଷ୍ଠୀ ମୁର୍ଦ୍ଦାବାଦ, ବିରୁଦ୍ଧ ଗୋଷ୍ଠୀ ମୁର୍ଦ୍ଦାବାଦ" ଇତ୍ୟାଦି ଧ୍ୱନିରେ ପୁଣି ସଭାସ୍ଥଳ କିଛି ସମୟ ପାଇଁ ମୁଖର ହେଲା।

"ଆପଣମାନେ ଜାଣନ୍ତି, ଏଥର ବିରୁଦ୍ଧ ଦଳ ସବୁ ଏକଜୁଟ ହୋଇ ମୋ ବିରୁଦ୍ଧରେ ଜଣେ ମିଳିତ ପ୍ରାର୍ଥୀ ଠିଆ କରେଇଛନ୍ତି। ଜଣ ଜଣ ହୋଇ ସେମାନେ କେହି ମୋର ସମ୍ମୁଖୀନ ହୋଇ ପାରିଲେ ନାହିଁ। ତେଣୁ ଅଭିମନ୍ୟୁଙ୍କୁ ମାରିବା ପାଇଁ କୌରବ ସପ୍ତରଥୀ ଯେପରି ଏକାଠି ହୋଇ ଆକ୍ରମଣ କଲେ, ଏଥର ଠିକ୍ ସେପରି ଏକ ଷଡ଼ଯନ୍ତ୍ର ହୋଇଛି। ମୁଁ କିନ୍ତୁ ଡରିଯିବା ଲୋକ ନୁହେଁ, ମୁଁ ବୀର, ବୀର-ମରେ ନାହିଁ ପରାଣ ଆତଙ୍କେ'—ବିରୁଦ୍ଧ ଦଳର ବ୍ୟୂହ ଭାଙ୍ଗି ମୁଁ ବିଜୟୀ ହୋଇ ଫେରି ଆସେ ମୋତେ ଆପଣ ମାନେ ଏଇ ଆଶିର୍ବାଦ ଦିଅନ୍ତୁ। ଏଇ ଶୁଭେଚ୍ଛା ଦିଅନ୍ତୁ।"

ସଭାସ୍ଥଳରେ ପୁଣି ସ୍ଲୋଗାନର କୋଳାହଳ।

"ମୋ ବିରୁଦ୍ଧରେ କୁଚକ୍ରୀ ମାନେ କେତେକ ମନଗଢ଼ା ଅଭିଯୋଗ ଆଣି ଗୋଟାଏ ପ୍ରଚାର ପତ୍ର ବାଣ୍ଟିଛନ୍ତି। 'ଗୁଲ୍‌ଖଟି ଗପ' ବୋଲି ଗୋଟାଏ କଥା ଅଛି। ମୁଁ ଭାବୁଛି ଅଭିଯୋଗ ଗୁଡ଼ିକ ତିଆରି କରିବା ବେଳେ ସେମାନେ ବୋଧ ହୁଏ

ଗୁଲ୍‌ଖଟିରେ ବସିଥିଲେ । ତାଙ୍କର ସେଇ ମିଥ୍ୟା ଅଭିସନ୍ଧିମୂଳକ ଭିତ୍ତିହୀନ ଅଭିଯୋଗ ଗୁଡ଼ିକର ଉତ୍ତର ଦେବାର କୌଣସି ଆବଶ୍ୟକତା ନାହିଁ । କାରଣ ଆପଣ ମାନେ ଭଲ କରି ଜାଣନ୍ତି ମୁଁ କିଏ, ମୁଁ କିପରି ଲୋକ । ମୁଁ କିଣ କରିଚି ନ କରିଚି । ତଥାପି ସେହି ଅଭିଯୋଗ ସମ୍ପର୍କରେ କାହାର ମନରେ କିଛି ଦ୍ୱିଧା ରହିଥିବ ମୁଁ ସେଥିପାଇଁ ତାର ଉତ୍ତର ଏଠାରେ ଦେବା ଉଚିତ ମନେ କରୁଚି ।"

ଉପେନ୍ଦ୍ର ମହାନ୍ତି ଟେବୁଲ୍ ଉପରେ ଥିବା ପାଣି ଗ୍ଲାସ୍ ଉଠାଇ ଧୀରେ ଧୀରେ ପାନ କଲେ, ରୁମାଲ୍‌ରେ ମୁହଁ ପୋଛି, ରୁମାଲ୍‌ଟିକୁ ଯତ୍ନର ସହିତ ପକେଟସ୍ଥ କଲେ । ତାପରେ ସେ କହିବାକୁ ଆରମ୍ଭ କଲେ ।

"ମୋ ବିରୁଦ୍ଧରେ ପ୍ରଥମ ଅଭିଯୋଗ ମୁଁ ମନ୍ତ୍ରୀ ହୋଇ ବହୁତ କଳାଧନ ଅର୍ଜନ କରିଛି । ମୁଁ ପ୍ରଥମେ ମୋର ଅଭିଯୋଗ କର୍ତ୍ତାମାନଙ୍କୁ ମନେ ପକାଇ ଦେବାକୁ ଚାହେଁ, ମୁଁ ଉପେନ୍ଦ୍ର ମହାନ୍ତି ନିଜଗଡ଼ର ପୁରୁଣା ଜମିଦାର ରାୟ ବାହାଦୂର ବ୍ରଜେନ୍ଦ୍ର ମହାନ୍ତିଙ୍କର ନାତି । ରାୟ ସାହେବ ସୁରେନ୍ଦ୍ର ମହାନ୍ତିଙ୍କର ପୁଅ । ମୁଁ ସେମାନଙ୍କର ପ୍ରତିନିଧି, ମୋ ସହିତ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ଇସ୍କୁଲ ମାଷ୍ଟର ହରି ମହାପାତ୍ର ନୁହେଁ । ହରି ମହାପାତ୍ରଙ୍କର ବାପା ଯଜମାନି କରୁଥିଲେ । ତାଙ୍କ ଗୋସବାପା ରାୟ ବାହାଦୂର ବ୍ରଜେନ୍ଦ୍ର ମହାନ୍ତିଙ୍କର ମନ୍ଦିରର ପୂଜାରୀ ଥିଲେ । ତେଣୁ ଧନ ସମ୍ପତ୍ତି ହରି ମହାପାତ୍ରଙ୍କୁ ଗୋଟାଏ ବଡ଼ କଥା ବୋଲି ଜଣା ପଡିବ ନିଶ୍ଚୟ । ସେ ନିର୍ବାଚନରେ ଜିଣିଲେ ମାସକୁ ୫୦୦ଟଙ୍କା ଭତ୍ତା ପାଇବେ । ତାଙ୍କ ଜୀବନରେ ସେ ସେତିକି ଟଙ୍କା ଏକ ସମୟରେ କେବେ ଦେଖି ନଥିବେ । କିନ୍ତୁ ମୁଁ ଉପେନ୍ଦ୍ର ମହାନ୍ତି ଟଙ୍କା ପଇସା ଲୋଭରେ ରାଜନୀତି କରିବାକୁ ଆସି ନାହିଁ । ମୁଁ ମାସକୁ ପାଞ୍ଚଶହ ଟଙ୍କାରୁ ବେଶୀ ଗରିବ ଛାତ୍ରଙ୍କୁ ସାହାଯ୍ୟ ଦେଇଥାଏ । ମୋର ଅର୍ଥାଭାବ ବା ଅର୍ଥଲୋଭ ନଥିଲା, ନାହିଁ, କେବେ ବି ରହିବ ନାହିଁ । ଦୁର୍ନୀତି ନିରୋଧ କରିବା ପାଇଁ ମୁଁ ପ୍ରତିଜ୍ଞାବଦ୍ଧ । ସେଥିପାଇଁ କଠୋର କାର୍ଯ୍ୟାନୁଷ୍ଠାନ କରିବାକୁ ମୁଁ କେବେ ପଶ୍ଚାଦ୍‌ପଦ ହୋଇନାହିଁ କିମ୍ବା ହେବିନାହିଁ । ସେଥିପାଇଁ ଯେଉଁମାନଙ୍କ ସ୍ୱାର୍ଥରେ ଆଘାତ ଲାଗିଛି ସେମାନେ ମୋ ବିରୁଦ୍ଧରେ ଏହିପରି ଅପପ୍ରଚାର ଚଳେଇଛନ୍ତି । ମୋର ଦୃଢ଼ ବିଶ୍ୱାସ ଆପଣମାନେ ସେମାନଙ୍କର ଅପପ୍ରଚାରରେ ଭୁଲିବେ ନାହିଁ । ବିଜ୍ଞ ଭୋଟ ଦାତାମାନଙ୍କୁ ସେମାନେ କଦାପି ବୋକା ବନେଇ ପାରିବେ ନାହିଁ—ମୋର ଏ ବିଶ୍ୱାସ ଅଛି । ଆପଣ ମାନେ ବିଶ୍ୱାସ କରନ୍ତୁ, ମୁଁ ଏ ହାତରେ ଅନ୍ୟମାନଙ୍କୁ ଦାନ କରିଚି ସିନା, ଅନ୍ୟ କାହାଠାରୁ ଏକ ପଇସା ଗ୍ରହଣ କରିନାହିଁ ।"

ଅଦୂରରେ ହରିହର ମହାପାତ୍ରେ ମନ୍ତ୍ରୀଙ୍କର ଭାଷଣ ଶୁଣୁଥିବା ବେଳେ ଭାବୁଥିଲେ, ସଜନୀ କଣ ତାଙ୍କୁ ମିଛ ଖବର ଦେଇଥିଲା ?

ସଜନୀ ତାଙ୍କର ଭଣଜା । ସେ ଡାକ୍ତର । କଟକରୁ କୋରାପୁଟ ବଦଳି ବନ୍ଦ କରିବାକୁ ବହୁତ ଚେଷ୍ଟା କରି ନିଷ୍ଫଳ ହେବାପରେ ସ୍ୱାସ୍ଥ୍ୟ ମନ୍ତ୍ରୀ ଉପେନ୍ଦ୍ର ମହାନ୍ତିଙ୍କୁ ତାହା ଚର ମାଧ୍ୟମରେ ଦଶ ହଜାର ଟଙ୍କା ଦେଇ ସେ କାର୍ଯ୍ୟ ହାସଲ କରିଥିଲା । ଏହା ଏକ ନୂଆ କଥା ନୁହେଁ । ସ୍ୱାସ୍ଥ୍ୟ ଦପ୍ତରର ଏହା ଏକ ଗତାନୁଗତିକ ନିୟମ ବୋଲି ସଜନୀ ତାଙ୍କୁ ବୁଝାଇ ଦେଇଥିଲା । ଉପେନ୍ଦ୍ର ମହାନ୍ତିଙ୍କର କଥାର ଦୃଢ଼ତା ହରିହର ମହାପାତ୍ରଙ୍କୁ ଟିକିଏ ଶଙ୍କିତ କରି ପକେଇଲା । ନିଜ ଚିନ୍ତାକୁ ସ୍ଥଗିତ ରଖି ସେ ମନ୍ତ୍ରୀଙ୍କର ଭାଷଣ ପ୍ରତି ଧ୍ୟାନ ଦେଲେ ।

"ମୋ ବିରୁଦ୍ଧରେ ଦ୍ୱିତୀୟ ଅଭିଯୋଗ ମୁଁ ମୋର ଆତ୍ମୀୟ ମାନଙ୍କୁ ବଡ ବଡ଼ ଚାକିରିରେ ବସେଇ ଦେଇଛି । ବିଶେଷତଃ ମୋ ପୁଅକୁ ମାସିକ ତିନିହଜାର ଟଙ୍କା ଦରମାରେ ଗୋଟାଏ କମ୍ପାନୀରେ ଅଫିସର୍ କରେଇ ଦେଇଛି । ଏଭଳି ଏକ ଅଭିଯୋଗ ଯେ ବିକୃତ ମନର ପରିଚାୟକ ତାହା କହିବା ବାହୁଲ୍ୟ, ମୋର ପୁଅ ବି.ଏ ପଢ଼ିଛି । ସେ ଯେଉଁ ଚାକିରି ପାଇଛି ସେଥିପାଇଁ ୧୫୦୦ ପ୍ରାର୍ଥୀ ଥିଲେ । ସମସ୍ତଙ୍କୁ ଇଣ୍ଟରଭିଉ କରି ପରୀକ୍ଷା କରିବା ପରେ କମ୍ପାନୀର ବିଜ୍ଞ ଓ ବୁଦ୍ଧିମାନ ଡାଇରେକ୍ଟର ମାନେ ମୋର ପୁଅକୁ ଉପଯୁକ୍ତ ବୋଲି ବାଛିଲେ । ମୋର ପୁଅର ଦକ୍ଷତା କଣ ମୋର ଦୋଷ । ମୁଁ ହରି ମହାପାତ୍ରଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହେଁ—ମୁଁ ତାଙ୍କର ଛାତ୍ର । ନବମ ଶ୍ରେଣୀରେ ପଢ଼ିବା ବେଳେ ତାଙ୍କ ପୁତୁରାକୁ ଶତକଡ଼ା ନବେ ନମ୍ବର ଦେଇ ଦେଉଥିଲେ, ଏବଂ ମୋତେ ଓ ମୋ ପରି ଆହୁରି ଅନେକ ପିଲାଙ୍କୁ କୃପଣଙ୍କ ପରି ୮ । ୧୦ ନମ୍ବର ମଧ୍ୟ ଦେବାକୁ କୁଣ୍ଠିତ ହେଉଥିଲେ । ମୁଁ ପଚାରିବାକୁ ଚାହେଁ ସେ ଏପରି ଅନ୍ୟାୟ, ଏପରି ପକ୍ଷପାତିତା କାହିଁକି କରୁଥିଲେ । ତାଙ୍କ ପୁତୁରା ବର୍ଷକୁ ବର୍ଷ ଫାଷ୍ଟ ହୋଇ କ୍ଲାସ ଉଠି ଯାଉଥିଲା ବେଳେ ଆମେ ଫେଲ୍ ହୋଇ ପଛରେ ପଡ଼ି ରହୁଥିଲୁ । ସେତେବେଳେ ତାଙ୍କର ବିଚାର ବୁଦ୍ଧି କୁଆଡେ ଯାଇଥିଲା । ତାଙ୍କୁ ପୁଣି ତାଙ୍କର ଗୋଡାଣିଆ ମାନେ କହୁଛନ୍ତି ନେତା ।"

ସଭାସ୍ଥଳ କିଛି ସମୟ ପାଇଁ ହରି ମହାପାତ୍ର ମୁର୍ଦ୍ଦାବାଦ ଧ୍ୱନିରେ ମୁଖରିତ ହେଲା ।

ହରିହର ନୀରବରେ ବିଗତ ଦିନ ଗୁଡ଼ିକୁ ମୁହୂର୍ତ୍ତିକ ଭିତରେ ସ୍ମରଣ କରିନେଲେ ।

ସମସ୍ତଙ୍କୁ ପାଠ ପଢ଼ାରେ ଲଗାଇବାକୁ ତାଙ୍କୁ ବର୍ଷ ବର୍ଷ ଧରି ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଛି । ପଛରେ ପଡ଼ି ରହୁଥିବା ଛାତ୍ରମାନଙ୍କ ପାଇଁ ତାଙ୍କର ସବୁବେଳେ ବିଶେଷଦୃଷ୍ଟି ବିଶେଷ ଯତ୍ନ ଥାଏ । ଉପେନ୍ଦ୍ର ମହାନ୍ତଙ୍କର ବାପା ଚାହୁଁଥିଲେ ତାଙ୍କ ପୁଅ ବିଲାତ ପଢ଼ିବାକୁ ଯାଉ । ସାହେବ ମାନଙ୍କ ପରି ସାହେବ ହେଉ । 'ସାର୍' ଉପାଧି ପାଇ କୁଳ ଉଜ୍ଜ୍ୱଳ କରୁ । ସେ ତାଙ୍କୁ ଅନୁରୋଧ କରିଥିଲେ ତାଙ୍କ ପୁଅ ପ୍ରତି ବିଶେଷ ଧ୍ୟାନ ଦେବାକୁ । କିନ୍ତୁ ଉପେନ୍ଦ୍ର ମହାନ୍ତି ଥିଲେ ପାଠପ୍ରତି ନିସ୍ପୃହ । ପାଠ ପଢ଼ିବା ଥିଲା ତାଙ୍କର ଗୋଟିଏ ବିଳାସ ମାତ୍ର । କିନ୍ତୁ ତାଙ୍କର ପୁରୁଣା ନିରଞ୍ଜନ—ବାପା ମା ଛେଉଣ୍ଡ ନିରାଶ୍ରୟ ପିଲାଟାକୁ ପାଖରେ ରଖି ଅଳ୍ପ କିଛି ପାଠ ପଢ଼ାଇ ଗୋଟାଏ କିରାଣୀ ଚାକିରୀରେ ଲଗେଇ ଦେବା ତାଙ୍କର ଲକ୍ଷ୍ୟ ଥିଲା । କିନ୍ତୁ ସେ ପିଲାଦିନରୁ ମନଦେଇ ପାଠ ପଢ଼ି ଆଗେଇ ଚାଲିଲା । ସେ କେବେ ପ୍ରଥମ ସ୍ଥାନରୁ ତଳକୁ ଆସି ନାହିଁ । ବିଶ୍ୱବିଦ୍ୟାଳୟର ସବୁ ପରୀକ୍ଷାରେ ମଧ୍ୟ ତାର ସ୍ଥାନଥିଲା ପ୍ରଥମ । ସେ ଏମ୍.ଏ ପାଶ୍‌କରି ଅଧ୍ୟାପକ ହେଲା । ବିଲାତ ଯାଇ ଡକ୍ଟରେଟ୍ କଲା । ତାର କୃତିତ୍ୱ ତାର ସାଧନାର ଫଳ । କାହାର ପକ୍ଷପାତିତା ବା ଅନୁଗ୍ରହର ପାତ୍ର ସେ କେବେ ହୋଇନାହିଁ । ଉପେନ୍ଦ୍ର ମହାନ୍ତଙ୍କର ଅଭିଯୋଗ ଶୁଣି ହରିହର ଭାବିଲେ, ଉପେନ୍ଦ୍ରର ଏବେ ବି ପିଲାଳିଆମି ଯାଇନାହିଁ ।

ହରିହର ନିଜକୁ ଚିନ୍ତାମୁକ୍ତ କରି ମନ୍ତ୍ରୀଙ୍କର ଭାଷଣ ପ୍ରତି ପୂରା ଧ୍ୟାନ ଦେଲେ ।

"ମୋ ବିରୁଦ୍ଧରେ ତୃତୀୟ ଅଭିଯୋଗ, ମୁଁ ଏ ଅଞ୍ଚଳର ଉନ୍ନତିପାଇଁ ବେଶୀକିଛି କରିନାହିଁ । ମୁଁ କେବଳ ଏତିକି କହିବାକୁ ଚାହେଁ, ଗତ ଦଶବର୍ଷ ଭିତରେ ଏ ଅଞ୍ଚଳରେ ମୁଁ ଯାହା କାମ କରିଛି, ତାହା ଆଉ କେହି ୨୫ ବର୍ଷ ଭିତରେ ବି କରିପାରି ନଥାନ୍ତା । ମୁଁ ଚାଲେଞ୍ଜ କରି କହିପାରେ, ହରି ମହାପାତ୍ରେ ସେତିକି କାମ ଶହେବର୍ଷ ଭିତରେ ବି କରେଇ ପାରିବେ ନାହିଁ । ହରି ମହାପାତ୍ରେ ରାଜନୀତିର କଣ ଜାଣନ୍ତି ? ତାଙ୍କର ବୁଦ୍ଧି କେତେ ! କଥାରେ କହନ୍ତି ମାଷ୍ଟ୍ର ହେଲେ ବୁଦ୍ଧି ଲୋପ ପାଇଯାଏ । ବାରବର୍ଷ ମାଷ୍ଟ୍ରି କରିଥିବା ଲୋକର ସାକ୍ଷ୍ୟକୁ ବ୍ରିଟିଶ୍ ସରକାର ଅମଳରେ ଜଜ୍ ମାଜିଷ୍ଟ୍ରେଟ୍ ମାନେ ଗ୍ରହଣ କରୁନଥିଲେ ବୋଲି ଶୁଣାଯାଏ । ସେଥିପାଇଁ ଜଣେ ବୃଦ୍ଧ ସ୍କୁଲ ମାଷ୍ଟର ଏଇ ଉପେନ୍ଦ୍ର ମହାନ୍ତି ଅପେକ୍ଷା ଅଧିକ କାମ କରି ପାରିବ ବୋଲି ଆପଣମାନେ ବିଶ୍ୱାସ କରୁଛନ୍ତି ?"

ସଭାଭିତରୁ ଉପେନ୍ଦ୍ର ମହାନ୍ତଙ୍କ ସମର୍ଥକମାନେ ପାଟିକରି ଉଠିଲେ, "ନାଁ ନାଁ ନାଁ ଉପେନ୍ଦ୍ର ମହାନ୍ତି ଆମର ନେତା; ହରି ମହାପାତ୍ର ମୁର୍ଦ୍ଦାବାଦ ।"

କୋଳାହଳ କମିବା ମାତ୍ରେ ଉପେନ୍ଦ୍ର ମହାନ୍ତି କହି ଚାଲିଲେ, "ଆପଣମାନେ ହରି ମହାପାତ୍ରଙ୍କର ସାଧାସିଧା ଚେହେରା ଦେଖି ଭୁଲନ୍ତୁ ନାହିଁ । ମୁଁ ଜାଣେ ତାଙ୍କୁ କେହି କେହି ସରଳ ଲୋକ 'ନଜଗଡ଼ର ଗାନ୍ଧୀ' ବୋଲି କହନ୍ତି । କିନ୍ତୁ ମନେ ରଖନ୍ତୁ ଖଦଡ଼ ପିନ୍ଧିଲେ କେହି ଗାନ୍ଧୀ ହୋଇଯାଏ ନାହିଁ, ଜେଲ୍ ଗଲେ ଲୋକ ନେତା ହୋଇଯାଏ ନାହିଁ । ଦେଶପାଇଁ କାମ ନକଲେ, ଜାତି ପାଇଁ କାମ ନକଲେ ଲୋକସେବା ନକଲେ କେହି ନେତା ହେବାପାଇଁ ଯୋଗ୍ୟ ହୋଇ ପାରେନା । ଆପଣମାନେ ଜାଣନ୍ତି, ମୋର କଣ ବା ଅଭାବ ଥିଲା ! ମୁଁ ଉତ୍କଳଲକ୍ଷ୍ମୀରେ ଆରାମରେ ଦିନ କଟାନ୍ତି, ଧନ ନାହିଁ ଗାଡି ନାହିଁ, ଖରା ନାହିଁ, ବର୍ଷା ନାହିଁ କାହିଁକି ଖଟୁଚି ? କାହାପାଇଁ ଖଟୁଚି ? ମୁଁ ଆପଣମାନଙ୍କ ପାଇଁ, ଦେଶପାଇଁ, ଜାତିପାଇଁ ସବୁ ତ୍ୟାଗ କରି ଦେଇଛି, ନିଜକୁ ଭୁଲି ଯାଇଛି । ମୋର ଲକ୍ଷ୍ୟ 'ମିଶୁ ମୋର ଦେହ ଏଦେଶ ମାଟିରେ; ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।' ହରି ମହାପାତ୍ରଙ୍କ ପରି ଦରମାଖଣ୍ଡିକ ପାଇଁ ମୁଁ ପିଲାମାନଙ୍କୁ ପାଠ ପଢ଼ାଉ ନାହିଁ ।"

ସଭାସ୍ଥଳ ପୁଣି ପ୍ରକମ୍ପିତ ହୋଇ ଉଠିଲା, ଉପେନ୍ଦ୍ର ମହାନ୍ତିଙ୍କ ଜୟ ନାଦରେ ।

ସେଇ ଅବସରରେ ହରିହର ଟିକିଏ ଅନ୍ତର୍ସମୀକ୍ଷା କରିନେଲେ ।

ତାଙ୍କୁ ଯେତେବେଳେ ୧୨ ବର୍ଷ, ସେ ସେତେବେଳେ ସତ୍ୟବାଦୀ ବନ ବିଦ୍ୟାଳୟ କଥା ପ୍ରଥମେ ଜାଣିବାକୁ ପାଇଥିଲେ । ତାଙ୍କର ଶିକ୍ଷକ ଥିଲେ ଜଣେ ଗାନ୍ଧିବାଦୀ ଆଦର୍ଶ ପୁରୁଷ—ଶମ୍ଭୁନାଥ ରାୟ । ଚମତ୍କାର ଭାବରେ ସେ ପାଠ ପଢ଼ାଉଥିଲେ । ମଝିରେ ମଝିରେ ସେ ଗାନ୍ଧିଜୀ ଓ ତାଙ୍କର ଅହିଂସା ଆନ୍ଦୋଳନର କଥା ମଧ୍ୟ ପିଲାମାନଙ୍କୁ କହୁଥିଲେ । ତାଙ୍କଠାରୁ ସେ ଗୋପବନ୍ଧୁ, ତାଙ୍କର ସତ୍ୟବାଦୀ ବନ ବିଦ୍ୟାଳୟ ଓ ତାଙ୍କର ସହକର୍ମୀ, ନୀଳକଣ୍ଠ, ଗୋଦାବରୀଶ, ହରିହର, କୃପାସିନ୍ଧୁଙ୍କ କଥା ଶୁଣି ବହୁତ ଉଦ୍‌ବୁଦ୍ଧ ହୋଇଥିଲେ । କିଛିଦିନ ପରେ ଶମ୍ଭୁନାଥ ବାବୁଙ୍କୁ ପୋଲିସ ଗିରଫ କରି ନେଲା । ବନ୍ଧାହୋଇ ଯିବାବେଳେ ତାଙ୍କ ମନରେ ଟିକିଏ ବି ଶୋଚନା ନଥିଲା । ସେ ଦମ୍ଭର ସହିତ କହି ଚାଲିଥିଲେ 'ବନ୍ଦେ ମାତରମ ।' ମହାତ୍ମାଗାନ୍ଧିଙ୍କ ଜୟ । ଭାରତ ମାତାଙ୍କ ଜୟ । ତାଙ୍କ ସ୍ୱରରେ ସ୍ୱର ମିଳାଇବାକୁ କାହାରି ସାହସ ନଥିଲା । କେବଳ ସେ ନିଜକୁ ସଂଯତ କରି ନପାରି ଥରେ ମାତ୍ର କହିଦେଇଥିଲେ ବନ୍ଦେ ମାତରମ୍ ଏବଂ ସେଥିପାଇଁ ତାଙ୍କୁ ଥାନାକୁ ଯିବାକୁ ପଡ଼ିଥିଲା ଏବଂ ସେଠାରେ କୋଡ଼ିଏ ବେତ ଖାଇବାକୁ ହୋଇଥିଲା । ତା ସହିତ ଦାରୋଗା ସାହେବଙ୍କଠାରୁ ଗୋଟିଏ ବ୍ରହ୍ମଚାପୁଡ଼ା, ସ୍ୱରାଜ୍ୟ ଆନ୍ଦୋଳନରେ

ପ୍ରତ୍ୟକ୍ଷ ଭାବରେ ଜଡ଼ିତ ହୋଇ ନଥିଲେ ମଧ୍ୟ ଗାନ୍ଧି ଗୋପବନ୍ଧୁଙ୍କ ଆଡ଼କୁ ତାଙ୍କର ମନ ଟାଣି ହୋଇ ଯାଇଥିଲା । ସତ୍ୟବାଦୀ ବନ ବିଦ୍ୟାଳୟରେ ପଢ଼ିବାପାଇଁ ମନସ୍ଥିର କରି ସେ କାହାକୁ କିଛି ନ କହି ଆଠଦିନ କାଳ ଚାଲି ଚାଲି ଭିକ୍ଷା ଉପାସରେ ସତ୍ୟବାଦୀରେ ପହଞ୍ଚିଲେ । ସେଠାରେ ତାଙ୍କୁ ଆଶ୍ରୟ ମିଳିଥିଲା । କିନ୍ତୁ ତାର ଅଳ୍ପ କିଛିକାଳ ପରେ ବନ ବିଦ୍ୟାଳୟ ଭାଙ୍ଗିଗଲା । ଯେତିକି ଦିନ ସେ ସେଠାରେ ପଢ଼ିଥିଲେ ତାର ଗଭୀର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ସେ ଗୋଟିଏ କଥା ଭଲଭାବରେ ବୁଝିଥିଲେ—ବ୍ୟକ୍ତିର ବିକାଶରେ ହିଁ ସମାଜର ବିକାଶ । ଦେଶର ବିକାଶ । ତେଣୁ ପ୍ରତ୍ୟେକ ବ୍ୟକ୍ତି ସତ୍, ସାଧୁ, ସଚ୍ଚରିତ୍ର ହେଲେଯାଇ ଦେଶର ମଙ୍ଗଳ ହେବ । ବାପୁଜୀଙ୍କର ସ୍ୱରାଜ୍ୟର ସ୍ୱପ୍ନ, ରାମରାଜ୍ୟର ସ୍ୱପ୍ନ ସଫଳ ହେବ । ଆଗେ ନିଜର ଚରିତ୍ର ଗଠନ କରିବା ଥିଲା ଯେଥିପାଇଁ ତାଙ୍କର ଆଜୀବନ ସାଧନା । ଗୋଦାବରୀଶ ନୀଳକଣ୍ଠଙ୍କ ପରି ସବୁ ମୋହ ତ୍ୟାଗ କରି ଶିକ୍ଷକ ହୋଇ ଭବିଷ୍ୟତର ନାଗରିକ ଗଢ଼ିବା ଥିଲା ତାଙ୍କର ଧ୍ୟେୟ । ଏ ପର୍ଯ୍ୟନ୍ତ ଏ ଦୁଇଟି କାର୍ଯ୍ୟ ହିଁ ସେ କରି ଚାଲିଛନ୍ତି । ରାଜନୀତିର ବିଶେଷ ଅର୍ଥ ପ୍ରକୃତରେ ସେ ଜାଣନ୍ତି ନାହିଁ । ରାଜନୀତିରେ ପଶି ଭୋଟ ଲଢ଼େଇରେ ଯୋଗଦେଇ ମନ୍ତ୍ରୀ ହେବାପରି ଏକ କାମନା ତାଙ୍କୁ କେବେ ଛୁଇଁନଥିଲା । କିନ୍ତୁ ଲୋକଙ୍କର ସାନୁନୟ ଅନୁରୋଧକୁ ଏଡ଼ି ନପାରି ବାଧ୍ୟ ହୋଇ ସେ ନିର୍ବାଚନରେ ଠିଆ ହେବାକୁ ସମ୍ମତି ପ୍ରଦାନ କରିଥିଲେ । ଉପେନ୍ଦ୍ର ମହାନ୍ତିଙ୍କୁ ଏବେ ମଧ୍ୟ ସେ ନିଜର ପିଲାପରି ଶ୍ରଦ୍ଧା କରନ୍ତି । ତାଙ୍କ ପ୍ରତି ତାଙ୍କର ଅନ୍ତରରେ ଟିକିଏ ବିଦ୍ୱେଷ ଭାବ ନାହିଁ । ହୁଏ ତ ପ୍ରକୃତରେ ସେ ଉପେନ୍ଦ୍ର ମହାନ୍ତିଙ୍କର ସମକକ୍ଷ ନୁହନ୍ତି । କିନ୍ତୁ ରାଜନୀତିରେ ପଶିଥିବା ଆବିଳତା କଥା, ଶାସନ କଳର ଦୁର୍ନୀତି କଥା ଏବଂ ଦେଶର ଅଧୋଗତି କଥା ଶୁଣି ଦେଶର ବାୟୁମଣ୍ଡଳକୁ ନିର୍ମଳ କରିବାକୁ ଗୁଣ୍ଡୁଚି ମୂଷାପରି ଯଥାଶକ୍ତି ଚେଷ୍ଟା କରିବେ ବୋଲି ସ୍ଥିର କରି ସେ ଲୋକମାନଙ୍କର ଅନୁରୋଧ ରକ୍ଷାକରିବାକୁ ବାଧ୍ୟହେଲେ । ଲୋକମାନଙ୍କର ତାଙ୍କ ଉପରେ ଥିବା ଆସ୍ଥାକୁ ସେ ତୁଚ୍ଛ ମନେକରି ପାରିଲେ ନାହିଁ । ନିର୍ବାଚନରେ ସେ ପ୍ରାର୍ଥୀ ହେବାତଲେ ତାଙ୍କର ବ୍ୟକ୍ତିଗତ କାମନା କିଛି ନାହିଁ । ତଥାପି କାହିଁକି ଉପେନ୍ଦ୍ର ମହାନ୍ତିଙ୍କର ତାଙ୍କ ପ୍ରତି ବ୍ୟଙ୍ଗୋକ୍ତି ହୃଦୟର କେଉଁ ଏକ ଗଭୀର ଗୋପନ ସ୍ଥାନରେ ତାଙ୍କୁ ଆଘାତ ଦେଲା ।

ସେ ଆଘାତର ଯନ୍ତ୍ରଣାକୁ ଚେଷ୍ଟାକରି ମନରୁ ପୋଛିଦେଇ ସେ ପୁଣି ଭାଷଣ ଶୁଣିବାକୁ ମନ ଦେଲେ ।

"କେହି କେହି ଭାବନ୍ତି ହରିମହାପାତ୍ରେ ଜଣେ ପରମ ସାଧୁ ପୁରୁଷ । ସେ ଗାନ୍ଧିଙ୍କ ପରି ଆଣ୍ଠୁ ଲୁଚୁ ନଥିବା ଖଦଡ଼ ଲୁଗା ପିନ୍ଧନ୍ତି । ନିଜେ ଅରଟରେ ସୂତା

କାଟନ୍ତି । ଭାତ ଡ଼ାଲମା ତାଙ୍କର ଖାଦ୍ୟ । ସ୍କୁଲରେ ପିଲମାନଙ୍କ ସହିତ ରାମଧୁନ୍ ଗାଆନ୍ତି—ସେଥିପାଇଁ ସେ ଜଣେ ଗାନ୍ଧି । କିନ୍ତୁ ମୁଁ କହିବି, ପ୍ରକୃତରେ ସେ ତାହା ନୁହନ୍ତି । ସେ ମୋର ପୂଜ୍ୟ ଶିକ୍ଷକ । ମୁଁ ତାଙ୍କୁ ସବୁବେଳେ ମାନି ଆସିଛି । ଭଲ ହୁଅନ୍ତୁ ମନ୍ଦ ହୁଅନ୍ତୁ ସେ ମୋର ଗୁରୁ । ମୁଁ କେବେ ତାଙ୍କର ନିନ୍ଦା କରି ନାହିଁ । କିନ୍ତୁ ଅବସ୍ଥା ଚକ୍ରରେ ପଡ଼ି ମତେ ତାଙ୍କର ଅସଲ ରୂପକୁ ପଦାରେ ପକାଇ ଦେବାକୁ ପଡ଼ୁଛି । ମୁଁ ସତ କହୁଛି, ମତେ ଯଦି ହରିମହାପାତ୍ରେ ଆସି ଖାଲି କହିଥାଆନ୍ତେ 'ଉପେନ୍ଦ୍ର, ମୁଁ ଭୋଟରେ ଠିଆ ହେବାକୁ ଚାହୁଁଛି', ତାହାହେଲେ ମୁଁ ନିଜେ ନିଜେ ଆଗେଇ ଯାଇଥାନ୍ତି । ଖାଲି ସେତିକି ନୁହେଁ ଆଜି ଏଇ ସଭାରେ ମୁଁ ତାଙ୍କ ପାଇଁ ଭୋଟ ପ୍ରଚାର କରିବାକୁ ଠିଆ ହୋଇଥାନ୍ତି । ମୁଁ ନିଜ ହାତରୁ ଟଙ୍କା ଖର୍ଚ୍ଚ କରି ତାଙ୍କୁ ଜିତେଇଥାନ୍ତି । ଅନ୍ତତଃ ମୁଁ ମୋର ଗୁରୁଙ୍କୁ ଉପଯୁକ୍ତ ଗୁରୁ ଦକ୍ଷିଣା ଦେଇଛି ବୋଲି ମନେ ଶାନ୍ତି ପାଇଥାନ୍ତି । ମୁଁ ଭାବୁଥିଲି ହୁଏତ ହରି-ମହାପାତ୍ରେ ମତେ ଡାକି ସେଇକଥା କହିବେ । କାରଣ ଆପଣ ମାନଙ୍କ ପରି ମୋର ମଧ୍ୟ ବିଶ୍ୱାସ ଥିଲା ଯେ ସେ ଜଣେ ସତ୍‌ଲୋକ, ସାଧୁଲୋକ । କିନ୍ତୁ ମୋର ପର୍ବତ ପରି ସେ ବିଶ୍ୱାସ ଗୋଟାଏ ମୁହୂର୍ତ୍ତରେ ଭାଙ୍ଗି ଧୂଳିସାତ୍ ହୋଇଗଲା । ମୁଁ ଏବେ ମଧ୍ୟ ଭାବୁଛି, ଯାହା ଘଟିଲା ତାହା କଣ ସତରେ ସତ୍ୟ ନା ତାହାମୋର ଗୋଟାଏ ଦୁଃସ୍ୱପ୍ନ । ମୁଁ ଯାହା କହିବାକୁ ଯାଉଛି, ତାହା ଅତି ବିସ୍ମୟକର-ତାହା କହିବାକୁ ମତେ କଷ୍ଟ ଲାଗୁଛି, ଲଜ୍ଜାଲାଗୁଛି, ଦୁଃଖ ଲାଗୁଛି ।"

ଉପେନ୍ଦ୍ର ମହାନ୍ତି ଟିକିଏ ନୀରବ ରହିଗଲେ । ସଭାସ୍ଥଳ ନିସ୍ତବ୍ଧ । ତାଙ୍କର ସେହି ରହସ୍ୟାଚ୍ଛନ୍ନ କଥା ଶୁଣିବାକୁ ସମସ୍ତେ ଉତ୍କଣ୍ଠ ଆଗ୍ରହରେ ଅପେକ୍ଷା କରିଛନ୍ତି । ନିଜେ ହରିହର ବି ଉତ୍ସୁକ ହୋଇ ଅପେକ୍ଷା କରିଛନ୍ତି, ତାଙ୍କ ବିଷୟରେ ଉପେନ୍ଦ୍ର ମହାନ୍ତି କି ଲଜ୍ଜାକର ସତ୍ୟ ଉଦ୍‌ଘାଟନ କରିବାକୁ ଯାଉଛନ୍ତି ଜାଣିବାଲାଗି ।

"ତଥାପି ମୁଁ କହିବି, ନିଶ୍ଚୟ କହିବି । ସତ୍ୟ ପ୍ରକାଶ ପାଉ, ସତ୍ୟର ଜୟ ହେଉ । ଆପଣମାନେ ଜାଣନ୍ତି ସେପ୍‌ଟେମ୍ବର ୧୫ ତାରିଖ ଥିଲା ପ୍ରାର୍ଥୀପତ୍ର ଦାଖଲ କରିବାର ଶେଷଦିନ । ସେଇ ଦିନ ସମସ୍ତଙ୍କ ପଛରେ, ଶେଷ ମୁହୂର୍ତ୍ତରେ ପ୍ରାର୍ଥୀପତ୍ର ଦାଖଲ କରିଥିଲେ ହରିମହାପାତ୍ରେ । ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିବାର ଶେଷ ତାରିଖ ଥିଲା ସେପ୍‌ଟେମ୍ବର ୧୮ ତାରିଖ । ଏଇ ତିନିଦିନ କାଳ ମୁଁ ନିଜ ସହିତ ବହୁତ ଲଢ଼େଇ କରିଛି । ମୁଁ ମୋର ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବାକୁ ମନେ ମନେ ପ୍ରସ୍ତୁତ ହୋଇ ରହିଥିଲି । ମୋର ପୂଜ୍ୟ ଗୁରୁଦେବଙ୍କ ବିରୁଦ୍ଧରେ ଭୋଟ ଲଢେଇରେ ଅବତୀର୍ଣ୍ଣ ହେବାକୁ ମତେ ବହୁତ ଖରାପ ଲାଗୁଥିଲା । ପ୍ରତିଦ୍ୱନ୍ଦୀ ଭାବରେ

ସେ ଥିଲେ ମୋ ପାଇଁ ଅତି ତୁଚ୍ଛ, ଅତି ନଗଣ୍ୟ, କିନ୍ତୁ ମୋର ଶିକ୍ଷକ ଖ୍ୟାତିରେ ସେ ମୋପାଇଁ ଥିଲେ ଜଣେ ମହାନ୍ ବ୍ୟକ୍ତି । ମୁଁ ତେଣୁ ତାଙ୍କ ସପକ୍ଷରେ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବାକୁ ଏକପ୍ରକାର ସ୍ଥିର କରିସାରିଥିଲି । ମୁଁ ଖାଲି ଅପେକ୍ଷା କରିଥିଲି ସେ ମତେ ଡକେଇବେ । କହିବେ, 'ଉପେନ୍ଦ୍ର, ତୁ ଏଇ ନିର୍ବାଚନରୁ ଓହରି ଯା' । ବାସ୍ ସେତିକି, ତାଙ୍କର ସେତିକି କଥା ମୋର ଶିରୋଧାର୍ଯ୍ୟ ହୋଇଥାନ୍ତା । ମୁଁ ଓହରି ଯାଇଥାନ୍ତି । ଗୁରୁ ନିନ୍ଦା କରିବାକୁ ଏଇ ସଭାମଞ୍ଚରେ ମତେ ଠିଆ ହେବାକୁ ପଡ଼ିନଥାନ୍ତା । ଦିନପରେ ଦିନ ଗଡ଼ିଲା, ତାଙ୍କ ପକ୍ଷରୁ ପ୍ରଚାର ଆରମ୍ଭ ହୋଇଗଲା ବେଶ୍ ଜୋର୍‌ସୋର୍‌ରେ । ମୁଁ ପୂର୍ବବତ୍ ନୀରବ ଥାଏ । ମୋର ଦଳପକ୍ଷରୁ, ମୋର ସହକର୍ମୀ ମାନଙ୍କ ପକ୍ଷରୁ ମୋ ଉପରେ ଚାପ ପଡ଼ୁଥାଏ ପ୍ରଚାର ଆରମ୍ଭ କରିବାପାଇଁ । ତଥାପି ମୁଁ ଅପେକ୍ଷା କରିଥାଏ କାଳେ ମତେ ହରିମହାପାତ୍ରେ ଡାକି ପଠେଇବେ କି ? ସତକୁ ସତ ଦିନେ ଡାକରା ଆସିଲା । ସେପ୍ଟେମ୍ବର ୧୭ ତାରିଖରାତି ଗୋଟାଏ ବେଳେ ତାଙ୍କ ସହିତ ତାଙ୍କ ଘରେ ମତେ ଏକା ଏକା ଯାଇ ଦେଖା କରିବାକୁ ଖବର ଆସିଲା । ଗୁରୁଙ୍କ ଆଦେଶକୁ ତ ମୁଁ ଅପେକ୍ଷା କରି ରହିଥିଲି । ତେଣୁ ମନ ଖୁସିରେ ଯାଇ ଯଥା ସମୟରେ ତାଙ୍କ ପାଖରେ ପହଁଚିଲି ମୁଁ ଭାବୁଥିଲି ଗୁରୁ କହିବେ ଗୋଟିଏ ପ୍ରକାର କିନ୍ତୁ ଶୁଣିଲି ଆଉ ପ୍ରକାରେ । ଯାହା ଶୁଣିଲି ତାହା ପ୍ରଥମେ ବିଶ୍ୱାସ କରି ପାରିଲି ନାହିଁ । ହରି ମହାପାତ୍ରେ ମତେ କହିଲେ "ଉପେନ୍ଦ୍ର, କାଲି ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବାର ଶେଷଦିନ । ନିର୍ବାଚନରେ ଜିଣିବାର ତ ମୋର କୌଣସି ଆଶା ନାହିଁ । ସେଇ ଆଶାରଖି ମଧ୍ୟ ମୁଁ ଠିଆ ହୋଇନାହିଁ । ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବାକୁ ମୁଁ ପ୍ରସ୍ତୁତ । କିନ୍ତୁ ତୁମେ ସେଥିପାଇଁ ପନ୍ଦରହଜାର ଟଙ୍କା ଦିଅ ।

ହରିହର ସ୍ତବ୍ଧ ହୋଇଗଲେ । ଉପେନ୍ଦ୍ର ମହାନ୍ତିଙ୍କର ଆଉ କୌଣସି କଥା ସେ ଶୁଣି ପାରିଲେ ନାହିଁ ତାଙ୍କର ମନେ ହେଲା ତାଙ୍କର ଚତୁର୍ଦ୍ଦିଗରେ କେବଳ ଘନ ଅନ୍ଧକାର କିମ୍ବା ତାଙ୍କର ଚକ୍ଷୁ ଫୁଟିଯାଇଛି । ତାଙ୍କର କଣ୍ଠ ସ୍ତବ୍ଧ ହୋଇଯାଇଛି । ଚଳନ୍ତି ଶକ୍ତି ହରାଇ ସେ ପଥର ପାଲଟି ଯାଇଛନ୍ତି ।

କିଛି କ୍ଷଣର ସ୍ତବ୍ଧତା ପରେ ସେ ଚମକି ଉଠିବା ପରି ସଚେତନ ହୋଇ କହି ଉଠିଲେ 'ନା ନା ମିଛ । ମୁଁ କେବେ ଉପେନ୍ଦ୍ର ମହାନ୍ତିଙ୍କୁ ଏପରି କଥା କହିନାହିଁ ।' କିନ୍ତୁ ତାଙ୍କର କଣ୍ଠସ୍ୱର ଉପେନ୍ଦ୍ର ମହାନ୍ତିଙ୍କର ଜୟନାଦ ଭିତରେ ତାଙ୍କ ବ୍ୟତୀତ ଆଉ କାହାରିକୁ ଶୁଣାଗଲା ନାହିଁ ।

ହରିହର ସଭାସ୍ଥଳରୁ ବାହାରି ଆସିଲେ ।

ଉପେନ୍ଦ୍ର ମହାନ୍ତିଙ୍କର ଅଭିଯୋଗ ତାଙ୍କ ଉପରେ ଏକ ବଜ୍ର ପ୍ରହାର ପରି ମନେ ହେଉଥିଲା । ତଥାପି ସେ ମନେ ପକେଇଲେ— ସେପ୍ଟେମ୍ବର ୧୭ ତାରିଖ ରାତି ଗୋଟାଏ ବେଳେ ଉପେନ୍ଦ୍ର ମହାନ୍ତି ପ୍ରକୃତରେ ତାଙ୍କ ପାଖକୁ ଆସିଥିଲେ । ହରିହର ତାଙ୍କୁ ଡ଼ାକେଇ ନଥିଲେ । ସେ ଆସିଥିଲେ ନିଜ ଇଚ୍ଛାରେ । ନିର୍ଜନ ରାତରେ ସେ ଆସିଥିଲେ ଏକା ଏକା । ତାଙ୍କର ପାଦ ଛୁଇଁ ତାଙ୍କୁ ପ୍ରଣାମ କରିଥିଲେ । ହରିହର ତାଙ୍କୁ 'ଆୟୁଷ୍ମାନ୍ ହୁଅ, ଯଶସ୍ୱୀ ହୁଅ' ବୋଲି ଆନ୍ତରିକତାର ସହିତ ଆଶୀର୍ବାଦ କରିଥିଲେ । ତା ପରେ 'କୁଆଡେ଼ ଆସିଲ' ପ୍ରଶ୍ନର ଉତ୍ତର ଦେବାକୁ ଉପେନ୍ଦ୍ର ମହାନ୍ତି ବାରମ୍ବାର ଛେପ ଢୋ଼କି ଥିଲେ ଏବଂ ଶେଷରେ କହିଲେ, "ସାର୍ ମୁଁ ଆସିଛି ଆପଣଙ୍କୁ ଗୋଟିଏ କଥା କହିବାକୁ । ଆପଣ ଦଶ ହଜାର ଟଙ୍କା ନିଅନ୍ତୁ । ଏଇ ନିର୍ବାଚନରୁ ଓହରି ଯାଆନ୍ତୁ ।" କଥା କହୁ କହୁ ସେ ଟଙ୍କା ବିଡ଼ାଟି ଟେବୁଲ୍ ଉପରେ ଥୋଇଲେ ମଧ୍ୟ । ହରିହର ତାଙ୍କୁ ବିସ୍ମୟ ବିମୂଢ଼ ହୋଇ ଚାହିଁ ରହିଲେ ତାଙ୍କୁ ଉପେନ୍ଦ୍ର ମହାନ୍ତି ଟଙ୍କା ଲାଞ୍ଚ ଯାଚି ପାରନ୍ତି ଏକଥା ସେ ବିଶ୍ୱାସ କରି ପାରୁ ନଥିଲେ । ତାଙ୍କର କିଛି ସମୟ ପାଇଁ ବାକ୍ ସ୍ଫୁରଣ ହେଲା ନାହିଁ । ଉପେନ୍ଦ୍ର ମହାନ୍ତି କହିଲେ, 'ମୁଁ ଯାଉଚି ସାର୍ । କହିବେ ଯଦି ମୁଁ ପରେ ଆଉ କିଛି ଟଙ୍କା ଦେବି ।"

ଉପେନ୍ଦ୍ର ମହାନ୍ତି ଚଉକିରୁ ଉଠି ପଡ଼ିଲେ ଓ ଯିବାକୁ ଉଦ୍ୟତ ହେଲେ । ସେତିକିବେଳେ ଯାଇ ହରିହରଙ୍କର ବାକ୍ ସ୍ଫୁରଣ ହେଲା । ସେ କହିଲେ, 'ଉପେନ୍ଦ୍ର, ଟଙ୍କାଟା ନେଇଯାଅ ।'

ଉପେନ୍ଦ୍ର ମହାନ୍ତି ହରିହରଙ୍କୁ ଚାହିଁଲେ ।

ଚାରିଚକ୍ଷୁ ଏକାଠି ହେଲା । କିନ୍ତୁ ହରିହରଙ୍କ ଉଜ୍ଜଳ ଦୀପ୍ତ ଆଖିକୁ ଚାହିଁବା ମାତ୍ରେ ତାଙ୍କ ଆଖି ତଳକୁ ହୋଇଗଲା । ଟଙ୍କା ବିଡ଼ାଟି ଟେବୁଲ୍ ଉପରୁ ଉଠାଇ ନେଇ ଯାଉ ଯାଉ ସେ କହିଲେ, "ସାର୍ ଆପଣ ମୋର ଶିକ୍ଷକ । ମୁଁ ଆପଣଙ୍କର ଛାତ୍ର । ମୋର ଏଇ ଅପରାଧ ମାର୍ଜନା କରିଦେବେ । ଗୋଟିଏ ଅନୁରୋଧ କରୁଚି । ଆପଣ ଆଜିର ଏଇ କଥା କାହାକୁ କହିବେ ନାହିଁ ।

ଉତ୍ତରର ଅପେକ୍ଷା ନରଖି ଉପେନ୍ଦ୍ର ମହାନ୍ତି ଚାଲିଗଲେ । କିନ୍ତୁ ସେ ପାଇଥିଲେ ହରିହରଙ୍କର ସର୍ତ୍ତହୀନ କ୍ଷମାର ନୀରବ ସମ୍ମତି ।

ସେ ଚାଲିଯିବା ପରେ ହରିହର ଭାବିଲେ, 'ଉପେନ୍ଦ୍ରର ଆଜି ପର୍ଯ୍ୟନ୍ତ ବୁଦ୍ଧି ହେଲା ନାହିଁ । ସେ ତାଙ୍କୁ ଚିହ୍ନି ପାରିଲା ନାହିଁ ।

ସଭାସ୍ଥଳରୁ ବାହାର ଆସିବାବେଳେ ହରହର ଭାବୁଥିଲେ ସେ ମଞ୍ଚ ଉପରକୁ ଉଠିଯାଇ କହିବେ, ଭାଇମାନେ ଆପଣମାନଙ୍କୁ ଉପେନ୍ଦ୍ର ମହାନ୍ତି ଯାହା କହିଲେ, ତାହା ଖାଣ୍ଟି ମିଛ । ସତ କଥାଟା ମୋ ପାଖରୁ ଶୁଣନ୍ତୁ, ନା, ତାଙ୍କର ସେ ଇଚ୍ଛାକୁ ସେ ସାଙ୍ଗେ ସାଙ୍ଗେ ପରିହାର କରି ପକେଇଲେ । ଉପେନ୍ଦ୍ର ଖାଣ୍ଟି ମିଛକଥା କହିପାରନ୍ତି । କିନ୍ତୁ ସେ ଖାଣ୍ଟି ସତକଥା କହିପାରିବେ ନାହିଁ । ସେ କଥା ଦେଇଛନ୍ତି । ସେ ଅସତ୍ୟ ହୋଇ ପାରିବେ ନାହିଁ ।

ହରହର ଦ୍ରୁତ ପଦସଂଚରଣା କରି ଚାଲି ଯାଉଥିଲେ । ସତେ ଯେପରି ସେ ଅନ୍ଧକାର ଭିତରୁ ଆଲୋକ ଆଡ଼କୁ, ଅସତ୍ୟ ଭିତରୁ ସତ୍ୟ ଆଡ଼କୁ ପଳେଇ ଯିବାକୁ ବାଟ ଖୋଜୁଛନ୍ତି ।

ତାଙ୍କର ଅଜାଣତରେ ତାଙ୍କ ଆଖିରୁ କିନ୍ତୁ ଲୁହଧାର ବହି ଚାଲିଥିଲା । ସେ ଭାବପ୍ରବଣ ନୁହନ୍ତି । ବହୁ ବହୁ ବର୍ଷଧରି ସେ କେବେ କାନ୍ଦି ନାହାନ୍ତି । ହୁଏତ ଅଶ୍ରୁଧାର ଅନ୍ତରର କେଉଁ ଏକ ଅଜ୍ଞାତ କ୍ଷତରୁ ଝରି ପଡୁଥିବା ଶୋଣିତର ଧାରା ହୋଇପାରେ ।

ସେ ବାଟ ଚାଲୁ ଚାଲୁ ମନ୍ତ୍ରୋଚ୍ଚାରଣ କରିବା ଭଙ୍ଗୀରେ କହି ଚାଲିଥିଲେ ।

ସବ୍‌କୋ ସନ୍‌ମତି ଦେ ଭଗବାନ,
ରଘୁପତି ରାଘବ ରାଜାରାମ ।

କହିବା ବାହୁଲ୍ୟ ସେଇ ନିର୍ବାଚନରେ ହରହର ହାରି ଯାଇଥିଲେ ଓ ତାଙ୍କର ଅମାନତ ସହିତ ଆଉ ଯାହା ହରାଇଥିଲେ ତାହା ହେଉଛି ତାଙ୍କର ସତତା ଓ ସାଧୁତାର ଭାବମୂର୍ତ୍ତି ।

କଟକ



୮ । ୧୧ । ୭୬

# ଚରିତ୍ରହୀନ

ଆଜି ତିନିଦିନପରେ ପ୍ରବାସୀ ସାହିତ୍ୟ ଓ ସଂସ୍କୃତି ପରିଷଦର ଜନ୍ମଦିନ ବା ବାର୍ଷିକୋତ୍ସବ । ପ୍ରତିବର୍ଷ ଏଇ ଉତ୍ସବ ହୁଏ । କିନ୍ତୁ ଏ ବର୍ଷର ଉତ୍ସବ ସୁଧାଦେବୀଙ୍କ ମନ ଭିତରେ ବହୁତ ଉତ୍ତେଜନା ସୃଷ୍ଟି କରିଥିଲା । ସେ ନିଜେ ପରିଷଦର ସହକାରୀ ସମ୍ପାଦିକା ବୋଲି ନୁହେଁ । ତାଙ୍କ ଉତ୍ତେଜନା ଓ ଉଲ୍ଲାସର କାରଣ ଥିଲେ ଏ ବର୍ଷ ଉତ୍ସବର ପ୍ରଧାନଅତିଥି ସୁଧାଂଶୁ ରାୟ । ସୁଧାଂଶୁରାୟ ସେଇ ବର୍ଷର ଜ୍ଞାନପୀଠ ପୁରସ୍କାର ପାଇଥିଲେ । ତାଙ୍କୁ ପ୍ରଧାନ ଅତିଥି ଭାବରେ ନିମନ୍ତ୍ରଣ କରିବାକୁ ପ୍ରସ୍ତାବ ଆଣିଥିଲେ ସୁଧାଦେବୀ ନିଜେ । ପରିଷଦର ଅନେକେ ସେଥିରେ ଆପତ୍ତି କରିଥିଲେ । କାରଣ ସୁଦୂର ବନାରସର ପ୍ରବାସୀ ଓଡ଼ିଆମାନଙ୍କର ଏଇ ଶ୍ରେଷ୍ଠ ଅନୁଷ୍ଠାନର ନିମନ୍ତ୍ରଣ ରକ୍ଷା କରିବାକୁ ସୁଧାଂଶୁ ରାୟ ସମ୍ମତ ହେବେ ବୋଲି କେହି ଆଶା କରୁନଥିଲେ । ପରିଷଦର ବାର୍ଷିକୋତ୍ସବରେ ଆଗରୁ ବାହାରୁ କୌଣସି ଅତିଥି ଡ଼ାକିବାର ପରମ୍ପରା ନଥିଲା । ପୁଣି ଡ଼ାକିବା ଅର୍ଥ ଅନେକ ଖର୍ଚ୍ଚ । କେହି କେହି ଭୟ କରୁଥିଲେ ଯେ ଏଇ ଶ୍ରେଷ୍ଠ ଅନୁଷ୍ଠାନ ସୁଧାଂଶୁ ରାୟଙ୍କ ପରି ଖ୍ୟାତନାମା କବିଙ୍କୁ ଯଥାଯୋଗ୍ୟ ସମ୍ମାନ ଦେବାକୁ ସମର୍ଥ ହେବ ନାହିଁ । କିନ୍ତୁ ସୁଧାଦେବୀ ସବୁ ବିରୋଧକୁ ଖଣ୍ଡନ କରିଥିଲେ ପ୍ରବଳ ଭାବରେ । ସୁଧାଂଶୁ ରାୟଙ୍କୁ ଆଣିବା ଦାୟିତ୍ୱ ସେ ନିଜେ ନେଲେ । କାରଣ ସୁଧାଂଶୁରାୟ ତାଙ୍କର ସଂପର୍କୀୟ ଭାଇ । ଜ୍ଞାନପୀଠ ପୁରସ୍କାର ବିଜେତା ଭାବରେ ତାଙ୍କର ଉପସ୍ଥିତି ଓଡ଼ିଶା ବାହାରେ ସମଗ୍ର ଓଡ଼ିଆ ଜାତିର ଓ ଓଡ଼ିଆ ସାହିତ୍ୟର ଗୌରବ ପ୍ରକାଶ କରିବ । ସେଠାରେ ଥିବା ହିନ୍ଦୀ ସାହିତ୍ୟ ପରିଷଦ ଓ ବଙ୍ଗ ସାହିତ୍ୟ ପରିଷଦର ବହୁମୁଖୀ କାର୍ଯ୍ୟକ୍ରମ କଥା ସୂଚାଇ ଦେଇ ଓଡ଼ିଆମାନଙ୍କର ନିରୁତ୍ସାହ ମନୋଭାବର ସେ ନିନ୍ଦା କରିଥିଲେ ମଧ୍ୟ । ତାପରେ ଖର୍ଚ୍ଚ କଥା—ସେଥିପାଇଁ ସ୍ୱତନ୍ତ୍ର ଚାନ୍ଦା ସଂଗ୍ରହର ପ୍ରସ୍ତାବ ଦେବା ସଙ୍ଗେ ସଙ୍ଗେ ସେ

ନଜେ ଦୁଇଶହ ଟଙ୍କା ଦେବେ ବୋଲି ଘୋଷଣା କରି ପକେଇଲେ । ସେଥିପାଇଁ କରତାଳି ଦ୍ୱାରା ତାଙ୍କର ପ୍ରଶଂସା କରାଯାଇଥିଲା । ତା ବ୍ୟତୀତ ସୁଧାଂଶୁ ଭାଇ ତାଙ୍କ ଘରେ ରହିବେ । ତେଣୁ ତାଙ୍କ ପାଇଁ କିଛି ଖର୍ଚ୍ଚ ନାହିଁ କହିଲେ ଚଳେ ବୋଲି ସେସୂଚାଇ ଦେଇଥିଲେ । ପ୍ରସ୍ତାବ ସବୁ ସମ୍ମତ କ୍ରମେ ଗୃହୀତ ହେଲା । କେବଳ ଶେଷ ପ୍ରସ୍ତାବଟିକୁ ବିରୋଧ କରିଥିଲେ ମିସେସ୍ ଲଙ୍କା ମହାନ୍ତି । ସେ କହିଲେ "ପ୍ରଧାନ ଅତିଥିଙ୍କୁ କାହାଘରେ ରଖିବା ଉଚିତ ହେବ ନାହିଁ । ଡାକବଙ୍ଗଳାରେ ତାଙ୍କ ପାଇଁ ବ୍ୟବସ୍ଥା କରିବାକୁ ହେବ । ତାହାହେଲେ ତାଙ୍କର ମଧ୍ୟ କୌଣସି ଅସୁବିଧା ହେବନାହିଁ । ତା ଛଡ଼ା ତାଙ୍କ ସହିତ ଅନ୍ୟମାନେ ଚାହିଁଲେ ସେଠାରେ ସହଜରେ ଦେଖାକରି ପାରିବେ ।" ସୁଧାଦେବୀ ମନେ ମନେ ଭାବିଲେ, ଲଙ୍କା-ମହାନ୍ତି ଈର୍ଷାରେ ଜଳିଯାଇ ଏପରି ଗ୍ଲେଟଲେଙ୍କା କଥା କହୁଛନ୍ତି । କିନ୍ତୁ ଲଙ୍କା-ମହାନ୍ତିଙ୍କର କଥାକୁ ଅନ୍ୟମାନେ ସମର୍ଥନ କରିବାରୁ ସୁଧାଦେବୀ ବାଧ୍ୟ ହୋଇ ତାହାକୁ ଗ୍ରହଣ କରିନେଲେ । ଅବଶ୍ୟ ପ୍ରଧାନ ଅତିଥି ତାଙ୍କର ଆତ୍ମୀୟ ହୋଇଥିବାରୁ ତାଙ୍କୁ ଗୋଟିଏ ବେଳା ଖାଇବାକୁ ନିମନ୍ତ୍ରଣ କରିବାପାଇଁ ସୁଧାଦେବୀଙ୍କୁ ସୁଯୋଗ ଦିଆଗଲା । ସୁଧାଦେବୀ ମନେ ମନେ ଭାବିଲେ "ହଉ, ତୁମେ ସବୁ ପ୍ରସ୍ତାବ କରିଥାଅ । ସୁଧାଂଶୁ ଭାଇ ଆସି ଯାଆନ୍ତୁ । ସେ ଯଦି ଷ୍ଟେସନରୁ ସିଧା ସିଧା ମୋ ଘରକୁ ନ ଯାଇଛନ୍ତି ତାହାହେଲେ ମତେ କହିବ । ସେତେବେଳେ ଲଙ୍କା ମହାନ୍ତିର ମୁହଁ ପୋଡ଼ିଯିବ ଯେ—"

ସେଇ ଦିନଠାରୁ ସୁଧାଦେବୀଙ୍କ ମନରେ ଉଲ୍ଲାସ ଓ ଉତ୍ତେଜନା ଭରି ରହିଛି ଦିନ ଯେତିକି ନିକଟ ହୋଇ ଆସୁଛି ତାଙ୍କ ଗ୍ରୁଡ ଭିତରେ ସେଇ ଉଲ୍ଲାସର ଶୀହରଣ ବଢିଯାଇଛି । ସେ ତାଙ୍କ ଘରକୁ ସଜାଇବାରେ ଲାଗିଛନ୍ତି । ସୁଧଂାଶ ଭାଇ ଯେଉଁ ରୁମରେ ରହିବେ ତାକୁ ବିଶେଷ ଭାବରେ ବାରମ୍ବାର ସଜେଇ ରଖୁଛନ୍ତି । ସେ ନିଜେ କି କି ଶାଢୀ ପିନ୍ଧିବେ କି କି ବ୍ଲାଉଜ ପିନ୍ଧିବେ, କି ପ୍ରକାର ପ୍ରସାଧନ କରିବେ ତା ଠିକ୍ କରିଛନ୍ତି—ଅବଶ୍ୟ ମନେ ମନେ ବହୁବାର ପରିବର୍ତ୍ତନ ଓ ସଂଶୋଧନ କରିବାପରେ । ସୁଧାଂଶୁଭାଇଙ୍କ ପାଇଁ କଣ କଣ ରାନ୍ଧିବେ ଏବଂ ସେଥିପାଇଁ ଯାହାଯାହା ଜିନିଷ ଦରକାର ତାହାର ତାଲିକା କରି ରଖିଛନ୍ତି—ନାଁ ସବୁ ଜିନିଷ କିଣି ସାରିଛନ୍ତି ମଧ୍ୟ । ସୁଧାଂଶୁଭାଇ ଛତୁ ଖାଇବାକୁ ଭଲ ପାଆନ୍ତି । ତେଣୁ ବଜାରସରେ ଛତୁ ସଂଗ୍ରହ କରିବାକୁ ସେ ତାଙ୍କର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଛତୁ ଶଢର ହଣ୍ଡୀ ପ୍ରତିଭାସା ଜାଣିବାକୁ ତାଙ୍କୁ କମ୍ ପରିଶ୍ରମ କରିବାକୁ ପଡ଼ିନାହିଁ । ଅବଶ୍ୟ ଏ ସବୁଥିରେ ତାଙ୍କୁ ଅକୁଣ୍ଠିତ ସାହାଯ୍ୟ କରିଛନ୍ତି ତାଙ୍କ ସ୍ୱାମୀ ଯେ କି ସେଠା ବିଶ୍ୱବିଦ୍ୟାଳୟରେ ଜଣେ ସହକାରୀ ଲାଇବ୍ରେରିଆନ୍ ଭାବରେ

କାମ କରନ୍ତି । ସେ ମଧ୍ୟ ତାଙ୍କ ବନ୍ଧୁ ମହଲରେ ବାରମ୍ବାର କହିବାକୁ ଭୁଲି ନାହାନ୍ତି ଯେ ପ୍ରସିଦ୍ଧ ଜ୍ଞାନପୀଠ ପୁରସ୍କାର ବିଜେତା ଲେଖକ ସୁଧାଂଶୁରାୟ ତାଙ୍କ ସ୍ତ୍ରୀଙ୍କର କଜିନ ବ୍ରଦର ଅର୍ଥାତ୍ ତାଙ୍କର ବ୍ରଦର ଇନ୍ ଲ'।

ପ୍ରଧାନ ଅତିଥିଙ୍କୁ ନିମନ୍ତ୍ରଣ କରି ଯେଉଁ ଚିଠି ଯାଇଥିଲା ତା ସହିତ ସୁଧାଦେବୀ ଗୋଟିଏ ଛୋଟ ହାତଲେଖା ଚିଠି ପଠାଇଥିଲେ । ସେ ଏତିକି ମାତ୍ର ଲେଖିଥିଲେ, 'ସୁଧାଂଶୁ ଭାଇ, ତମେ ନିଶ୍ଚୟ ଆସିବ । ମୋର ବିଶେଷ ଅନୁରୋଧ । ଇତି ସୁଧା—ଚିହ୍ନି ପାରୁଚ ନା ?'' ସେ ମନେ ମନେ ଭାବୁଥିଲେ, ସୁଧାଂଶୁଭାଇ ତାଙ୍କ ଚିଠି ପାଇ ଆଶ୍ଚର୍ଯ୍ୟ ହୋଇଯିବେ । ପ୍ରଥମେ ହୁଏତ ତାଙ୍କୁ ଜାଣି ପାରିବେ ନାହିଁ । ତା ପରେ ନିଶ୍ଚୟ ମନେ ପକାଇବେ ଏବଂ ତାଙ୍କପାଖକୁ ଲେଖିବେ, 'ସୁଧା ତୋତେ ଚିହ୍ନି ପାରିବି ନାହିଁ ବୋଲି କିପରି ଭାବିଲୁ । ମୁଁ କଣ ତତେ ଭୁଲି ପାରିବି କି ? ମୁଁ ନିଶ୍ଚୟ ଯିବି । ତୋର ନିମନ୍ତ୍ରଣକୁ ଉପେକ୍ଷା କରିବାକୁ ସ୍ପର୍ଦ୍ଧା ମୋର ନାହିଁ । ଇତି ତୋର ସୁଧାଂଶୁଭାଇ । ''

ସୁଧାଂଶୁ ରାୟଙ୍କ ଉତ୍ତରକୁ ଉଦ୍‌ଗ୍ରୀବ ହୋଇ ସୁଧାଦେବୀ ଅନାଇ ରହିଥିଲେ । ଯଥା ସମୟରେ ତାଙ୍କର ଚିଠି ଆସିଲା । ଶ୍ରେଷ୍ଠ ଚିଠି । ସମ୍ପାଦକଙ୍କୁ ଲେଖିଛନ୍ତି ଯେ ସେ ନିମନ୍ତ୍ରଣ ରକ୍ଷା କରିଛନ୍ତି । ସେ ନିର୍ଦ୍ଦିଷ୍ଟ ତାରିଖ ଦିନ ସକାଳ ଏକ୍‌ସପ୍ରେସରେ ପହଁଚିବେ ଏବଂ ପରଦିନ ସକାଳ ମେଲ୍‌ରେ ନିଶ୍ଚୟ ଫେରିଯିବେ ସେ ଚିଠିକୁ ସୁଧାଦେବୀ ନିଜେ ଖୋଲିଥିଲେ । ନ ହେଲେ ସେ ଭାବିଥାନ୍ତେ ତା ସହିତ ତାଙ୍କ ପାଇଁ ମଧ୍ୟ ଚିଠି ଥିଲା, କେହି ନେଇ ଯାଇଛି । ତାଙ୍କ ଉପରେ ତ ସମସ୍ତଙ୍କର ଈର୍ଷା, ହିଂସା । ସୁଧାଂଶୁ ଭାଇ ତାଙ୍କର ଭାଇ ବୋଲି ସେ ଈର୍ଷା ଆହୁରି ବଢ଼ି ଯାଇଛି । ଲକ୍ଷ୍ମୀମହାନ୍ତି, ସରଳା ମିଶ୍ର, ବିଭା ଦାସ ସମସ୍ତେ ଶ୍ରେଷ୍ଠ ଲୋକ । ତାଙ୍କ ସ୍ୱାମୀଟି ମାନେ ମଧ୍ୟ ଗୋଟିଏ ଗୋଟିଏ ବୁଦ୍ଧୁ । ତାଙ୍କ ଚିଠିର କିଛି ଉତ୍ତର ନପାଇବାରୁ ସୁଧାଦେବୀ ପ୍ରଥମେ ଟିକିଏ ନିରାଶ ହୋଇ ପଡିଥିଲେ । ସେ କିନ୍ତୁ ମନକୁ ମନ ସାନ୍ତ୍ୱନା ଦେଲେ, ବୋଧହୁଏ ତାଙ୍କ ଚିଠିକୁ ବାଟରୁ କିଏ ମାରି ନେଇଛି । କିମ୍ବା ସୁଧାଂଶୁଭାଇ ନିଜେ ପହଁଚିଯାଇ ତାଙ୍କ କଥାର ଉତ୍ତର ଦେବେ-ବୋଲି ଭାବିଛନ୍ତି । ସେ ତାଙ୍କୁ ଚିହ୍ନି ପାରିଲେ ନାହିଁ କି, ଏମିତି ଏକ ଧାରଣା ତାଙ୍କ ମନକୁ ଆସୁ ଆସୁ ସେ ତାକୁ ମନଭିତରୁ ଜୋର୍‌କରି କାଢ଼ି ବାହାର କରିଦେଲେ । ସୁଧାଂଶୁ ଭାଇ ଚିହ୍ନିପାରିଲେ ନାହିଁ ଏହା କଦାପି ସମ୍ଭବ ହୋଇ ନପାରେ ।

ସୁଧା ଦେବୀ ସେ ଦିନ ପୁଣି ଥରେ ତାଙ୍କ ଘରକୁ ସଜାଡ଼ିବାରେ ଲାଗିଲେ । ଦିନ ବର୍ଷୁଥିବା କ୍ୱାଟରସ୍‌କୁ ମନୋମତ ଭାବରେ ସଜାଡ଼ିବା ବଡ କଷ୍ଟକର କଥା ।

ଯାହା ଅସୁବିଧା ହେଉଥାଉଛି ସେ ଠିକ୍ କଲେ ତାଙ୍କର ଶୋଇବା ଘରଟାକୁ ସେ ସୁଧାଂଶୁଭାଇଙ୍କ ପାଇଁ ଛାଡ଼ି ଦେବେ । ଅନ୍ୟ ଘରେ ସେ, ତାଙ୍କ ସ୍ୱାମୀ ଓ ପିଲାମାନେ କଷ୍ଟକରି ରହିଯିବେ । ଶୋଇବା ଘରେ ଭର୍ତ୍ତି ହୋଇଥିବା ଜିନିଷ ପତ୍ରକୁ କିଛି କାଢ଼ିନେଇ ସେ ବାରଣ୍ଡାରେ ରଖିଲେ ଏବଂ ତା ଉପରେ ଗୋଟିଏ ପର୍ଦ୍ଦା ଘୋଡାଇ ଦେଲେ । ସୁଧାଂଶୁ ଭାଇଙ୍କ ପାଇଁ ଉଦ୍ଦିଷ୍ଟ ଘରେ କେବଳ ଗୋଟିଏ ଖଟ, ଗୋଟିଏ ଛୋଟ ଟେବୁଲ୍ ଓ ଦୁଇଟି ଚଉକି ରହିଲା । ଟେବୁଲ୍ ଉପରେ ରହିଲା ସୁନ୍ଦର ଫୁଲଦାନୀ, ଟେବୁଲ୍ ଲ୍ୟାମ୍ପ, ରାଇଟିଂ ପ୍ୟାଡ୍ ଓ କଲମ । କାନ୍ଥରେ ଅଧିକ ସୁନ୍ଦର ଦେଖା ଯାଉଥିବା ତାଙ୍କର ସିଙ୍ଗଲ୍ ଫଟୋଟି ବ୍ୟତୀତ ଆଉ କିଛି ରଖିଲେ ନାହିଁ । ଅଦୂରବର୍ତ୍ତୀ ର୍ୟାକ୍‌ରେ କିଛି ବହିଥିଲା, ଯାହା ଭିତରେ ସୁଧାଂଶୁ ବାବୁଙ୍କର ୪ । ୫ ଖଣ୍ଡ ବହି ବି ଥିଲା । ର୍ୟାକ୍ ତଳ ଥାକରେ ଦୁଇଟି ସୁନ୍ଦର ବନ୍ଧେଇ ଖାତାଥିଲା । ସେ ଗୁଡ଼ିକ ସୁଧା ଦେବୀଙ୍କର କବିତା ଖାତା-ନିଜ ଲେଖା କବିତାର ଖାତା । ସୁଧାଂଶୁଭାଇ ଜାଣନ୍ତୁ, ସେ ଏକା କବି ନୁହନ୍ତି । ସୁଧା ଦେବୀ ମଧ୍ୟ କବିତା ଲେଖନ୍ତି ଏବଂ ତାଙ୍କ କବିତା ମହିଳା ମାନଙ୍କ ପତ୍ରିକାରେ ବାହାରେ । ସୁଧାଦେବୀ ସବୁ ଜିନିଷ ନିଜେ ତନ୍ନ ତନ୍ନ କରି ସୁନ୍ଦର ଭାବରେ ସଜାଡ଼ି ରଖିଲେ । ସୁଧାଂଶୁଭାଇ କେଉଁଠି ବସିବେ, । କେଉଁଠି ଶୋଇବେ, ସେ ତାଙ୍କ ପାଖରେ କେଉଁଠି ବସିବେ ସବୁକଥା ସେ ଭାବିନେଲେ । ସେ ସକାଳେ କେତେବେଳେ ଉଠିବେ—କବିମାନେ ତ ଅଳସୁଆ ନିଶ୍ଚୟ ଡେରିରେ ଉଠୁଥିବେ । ତାଙ୍କୁ ଆସି ଉଠାଇବାକୁ ପଡ଼ିବ । ଉଠାଇଲା ବେଳେ କଣ କରିବେ କେଜାଣି ! ସେ କହିବେ, ଉଠ, ଉଠ । ଉଷା ସୁନ୍ଦରୀ ଦର୍ଶନ ପାଇଁ ଅପେକ୍ଷା କରି କରି ନିରାଶ ହୋଇଗଲେ । ସକାଳ ସୁନ୍ଦରୀଙ୍କୁ ଆଉ ହତାଶ କରନାହିଁ । ତା ପରେ ତାଙ୍କୁ ସେ ନିଜ ହାତରେ ଗରମ ଗରମ ଚା’ କରି ଆଣିଦେବେ । ସୁଧାଂଶୁଭାଇ ହୁଏ ତ ଥରେ ଚା’ ଖାଇଦେଇ କହିବେ । ବଢ଼ିଆ ଚା’, ସେ ପଚାରିବେ ‘ସତ ନା ମିଛ ?’ ମିଛ ନୁହେଁ, ଖାଣ୍ଟି ସତ । ବଢ଼ିଆ ଚା’ ଠିକ୍ ତୋ ପରି ।” ନିଜ ଭାବନାରେ ମଧ୍ୟ ସୁଧାଦେବୀ ଲାଜେଇ ଗଲେ ଏବଂ ଉଲ୍ଲସିତ ହେଲେ ମଧ୍ୟ ।

ସୁଧାଦେବୀ ଠିକ୍ କଲେ ଦୁଇ ଶୋଇବା ଘର ମଝିରେ ଥିବା କବାଟ ପୂରା ବନ୍ଦ ରହିବ । ସୁଧାଂଶୁ ଭାଇଙ୍କର ପ୍ରାଇଭେସି ଯେମିତି ଅକ୍ଷୁଣ୍ଣିତ ରହେ । ସୁଧାଂଶୁ ଭାଇଙ୍କର ନିଭୃତ ସାମୀପ୍ୟ ଯେ ତାଙ୍କର ଅନ୍ୟତମ ଉଦ୍ଦେଶ୍ୟ ନଥିଲା ତାହା ଅବଶ୍ୟ ସୁଧାଦେବୀ ଶପଥ କରି କହି ପାରି ନ ଥାନ୍ତେ । ସୁଧାଂଶୁ ବାବୁଙ୍କର ବନାରସରେ ଦିନକର ପ୍ରୋଗ୍ରାମ ପରଦିନ ଫେରିଯିବା କଥା । ସେଥିପାଇଁ ତାଙ୍କର ଟିକେଟ୍ ବି କଣା ସରିଥିଲା । କିନ୍ତୁ ସୁଧାଦେବୀ ନିଶ୍ଚିତଥିଲେ ଯେ ସୁଧାଂଶୁଭାଇଙ୍କୁ

ଏତେ ଶୀଘ୍ର ଯିବାକୁ ଦେବେ ନାହିଁ । ଏତେ ଦିନର ବ୍ୟବଧାନ ପରେ ଦେଖା । ସେ ତ ମୋତେ ଛାଡ଼ିବେ ନାହିଁ । ସେ କେମିତି ଯିବେ ଯାଆନ୍ତୁ । ଦରକାର ହେଲେ ସେ କାନ୍ଦିବେ । କହିବେ, "ତୁମେ ଏଠାରୁ ଚାଲିଗଲା ପରେ ମତେ ଭୁଲିଯାଇପାର; ଏ ଦିନ ଗୁଡ଼ିକ ମୋର, ମୁଁ ମଧ୍ୟ ସେହିପରି ତୁମର ତୁମେ ପଳେଇବ କୁଆଡ଼େ । ମୁଁ ତୁମକୁ ଛାଡ଼ିବି ନାହିଁ । ଏତେ ଦିନ ପରେ ତୁମକୁ ପାଇଛି । ମୋ ମନ ବୋଧ ହେବା ପରେ ଯାଇ ତୁମକୁ ଛାଡ଼ିବି ।"

ସୁଧାଦେବୀ ବହୁତ ଚେଷ୍ଟା କରିଥିଲେ ପରିଷଦର ବାର୍ଷିକୋତ୍ସବ ପାଇଁ ଗୋଟିଏ ସ୍ମରଣିକା ପ୍ରକାଶ କରିବେ । ସେଥିରେ ସୁଧାଂଶୁ ଭାଇଙ୍କର ସାହିତ୍ୟ କୀର୍ତ୍ତିର ପ୍ରଶଂସା ରହିବ । ସୁଧାଂଶୁ ଭାଇଙ୍କର ଲେଖା ରହିବ । ତାଙ୍କ ନିଜ ଲେଖା ବି ରହିବ । ପ୍ରଥମ ପୃଷ୍ଠାରେ ସୁଧାଂଶୁ ଭାଇଙ୍କର ଫଟୋ ରହିବ । କିନ୍ତୁ ପରିଷଦରେ ଥିବା ସଭ୍ୟମାନଙ୍କର ଛୋଟ ଲେଖା ଯୋଗୁ ସେ ପ୍ରସ୍ତାବଟା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ ।

ସୁଧାଂଶୁ ଭାଇଙ୍କୁ କିପରି ରସିଭ୍ କରାଯିବ ସେଥିପାଇଁ ପୁଣି ଯେତେ ପ୍ରଶ୍ନ । କିଏ ତାଙ୍କୁ ରସିଭ୍ କରିବ ସେଥିପାଇଁ ପୁଣି ସମସ୍ୟା । କେହି ତ ତାଙ୍କ ନାଁ ଧରୁ ନଥିଲେ । ସେ ପ୍ରଥମେ ପ୍ରସ୍ତାବ ଦେବାରୁ ସିନା ଏତେ କଥା । କେତେ ଯୁକ୍ତି, କଳି ତକରାଳ କରିବାକୁ ନ ପଡ଼ିଚି ତାଙ୍କୁ ! ଅସଲ କଥାଟି କେହି ଜାଣନ୍ତି ନାହିଁ । ସମ୍ପାଦକଙ୍କ ଚିଠି ସହିତ ତାଙ୍କର ଛୋଟ ଚିଠିଟି ନଥିଲେ ଯେ ସୁଧାଂଶୁ ଭାଇଙ୍କ ପରି ଏତେ ବଡ଼ କବିଙ୍କ ସୀମା ମାଡ଼ିବା ସେମାନଙ୍କ ପକ୍ଷରେ ସମ୍ଭବ ହୁଅନ୍ତା ନାହିଁ—ଏହି କଥାଟା କହି ଦେବାକୁ ତାଙ୍କର ବହୁତ ଥର ମନ ହେଲାଣି । ସେକଥା ବହୁତ ଆଗରୁ କହି ସାରିଥାନ୍ତେ । କେବଳ ସୁଧାଂଶୁଭାଇ ଚିଠିର ଉତ୍ତର ନଦେବାରୁ ସେ ପଛେଇଗଲେ । ତଥାପି ସେ କହିବେ । ସଭାମଣ୍ଡପରେ ସମସ୍ତଙ୍କ ଆଗରେ କହିବେ । ସେ ସହକାରୀ ସମ୍ପାଦିକା । ସେ ସତକଥା କହିବାକୁ ଭୟକରିବେ କାହିଁକି ? ସେ କହିବେ "ସୁଧାଂଶୁଭାଇ ଆଜି ଏଠାରେ ଉପସ୍ଥିତ ହୋଇ ଆମ ମାନଙ୍କୁ ଧନ୍ୟ କରିଛନ୍ତି । ଶ୍ରେଷ୍ଠ ଅନୁରୋଧଟିକୁ, ଶ୍ରେଷ୍ଠ ଅଳିଟିକୁ ଉପେକ୍ଷାକରି ପାରିଲେ ନାହିଁ । ମୁଁ ଅବଶ୍ୟ ଜାଣିଥିଲି ସେ କଦାପି ମୋ ଅନୁରୋଧ ଟିକୁ ଏଡ଼ାଇ ପାରିବେ ନାହିଁ । ମୁଁ ଜାଣେ ସେ ମୋର ଛୋଟ ଅନୁରୋଧକୁ ଏଡ଼ାଇ ପାରିବେ ନାହିଁ । ସେତେବେଳେ ଲକ୍ଷ୍ମୀ ମହାନ୍ତି, ସରଳାମିଶ୍ର, ବଳିଦାସ, ହରେନ୍ଦ୍ର ନାୟକ, ନକ୍ଷତ୍ର ପରିଜା, ଶାନ୍ତନୁ ସିଂହ, ଲିଲି ପଟ୍ଟନାୟକଙ୍କର ମୁହଁରେ କଳା ଲାଗିଯିବ ।

ସୁଧା ଦେବୀ ମନେକରୁଥିଲେ ଯେହେତୁ ସୁଧାଂଶୁ ବାବୁ ତାଙ୍କ ନିମନ୍ତ୍ରଣକୁ ରକ୍ଷା କରିଛନ୍ତି ତାଙ୍କୁ ରସିଭ୍ କହିବା ଦାୟିତ୍ୱ ତାଙ୍କୁହିଁ ଦିଆଯିବା ଉଚିତ । ସେ

ତାଙ୍କୁ ଷ୍ଟେସନ୍‌ରେ ଯାଇ ରସିଭ୍ କରି ଆଣିବେ । ଏହିକଥା ଭାବୁଥିବା ବେଳେ ସୁଧା ଦେବୀଙ୍କ ଆଖି ଆଗରେ ନାଚି ଯାଉଥିଲା ସେଇ ସୁନ୍ଦର ଦୃଶ୍ୟଟି—ଟ୍ରେନ୍ ଆସି ପ୍ଲାଟଫର୍ମରେ ଠିଆ ହେଲା । ସମସ୍ତେ ଉତ୍କଣ୍ଠିତ ହୋଇ ଅପେକ୍ଷା କରିଛନ୍ତି । ସମସ୍ତଙ୍କ ଆଗରେ ସେ ନିଜେ । ତାଙ୍କ ପଛରେ ଆଉ ସମସ୍ତେ । ତାଙ୍କ ହାତରେ ସଜଫୁଟା ଫୁଲର ମୋଟା ହାର । ଫାଷ୍ଟ କ୍ଲାସ କମ୍ପାର୍ଟମେଣ୍ଟର ଦ୍ୱାର ଦେଶରେ ସୁଧାଂଶୁଭାଇଙ୍କ ମୁହଁ ଦେଖାଗଲା । ସମସ୍ତେ ସେଠାକୁ ଦଉଡ଼ିଲେ । ସମସ୍ତଙ୍କ ଆଗରେ ସେ ନିଜେ । ଗାଡ଼ିରୁ ଓହ୍ଲାଇବା ମାତ୍ରେ ସେ ତାଙ୍କ ବେକରେ ସେଇ ମୋଟା ହାରଟିକୁ ଲମ୍ବାଇ ଦେଲେ ଏବଂ ସାଙ୍ଗେ ସାଙ୍ଗେ ସେଇଠି ନଇଁପଡ଼ି ତାଙ୍କ ପାଦ ଛୁଇଁ ପ୍ରଣାମ କଲେ । ସୁଧାଂଶୁଭାଇ ତାଙ୍କ ତଳୁ ଉଠାଇ ନେଇ ନିଜ ଆଡ଼କୁ ଟାଣି ନେଲେ ଏବଂ ତାଙ୍କ ବୁକୁ ଉପରେ ମୁହଁ ରଖି ସେ ରହିଗଲେ କିଛିକ୍ଷଣ । ଟିକିଏ ସକ୍ ଲାଗିବା ପରି ଆପେ ଆପେ ଗୋଟାଏ ପ୍ରଶ୍ନ ଆସିଗଲା ସୁଧା ଦେବୀଙ୍କ ମନକୁ, 'କଣ ଭାବିବେ ଅନ୍ୟମାନେ ? କଣ ଭାବିବେ ? ଭାବନ୍ତୁ, ଯାହା ଇଚ୍ଛା ଭାବନ୍ତୁ । ଯେତେ କଡ଼ାଫି କଥା କହି ପାରନ୍ତି କହନ୍ତୁ । ସୁଧା ଦେବୀ ଭାବିଲେ ସତରେ ଏମିତିକା ହୁଅନ୍ତା କି । ଦେଖନ୍ତେ କି ସେହି ଛୋଟ ଲୋକ ମହିଳା ମାନେ ସୁଧାଂଶୁ ରାୟ ସୁଧା ଦେବୀଙ୍କର କଣ ହୁଅନ୍ତି ! ମାତ୍ର ତା ହେବାର ନୁହେଁ । ପରିଷଦରେ ଠିକ୍ ହୋଇଛି ସଭାପତି ନିଜେ ଫୁଲମାଳ ଦେଇ ଅଭ୍ୟର୍ଥନା କରିବେ ପ୍ରଧାନ ଅତିଥିଙ୍କୁ ! ଅନ୍ୟ ସମସ୍ତେ ପଛରେ ରହିବେ । ଏପରି କି ସୁଧା ଦେବୀ ମଧ୍ୟ ।

ତିନି ଦିନ ଧରି ସୁଧାଦେବୀ ସୁଧାଂଶୁ ରାୟଙ୍କ ଆସିବା କଥା ଭାବୁଥିଲେ । କିନ୍ତୁ ସେଦିନ ଅପରାହ୍ଣରେ ତାଙ୍କ ମନ ଆହୁରି ମୁକ୍ତ, ଆହୁରି ଖୋଲା, ଆହୁରି ହାଲୁକା ହୋଇଯାଇଥିଲା । ତେଣୁ ରସିଭ୍ କରିବା କଥା ଭାବୁ ଭାବୁ ତାଙ୍କ ମନକୁ ପ୍ରଶ୍ନ ଆସିଲା; କେମିତିକା ଦେଖିବାକୁ ହେଲେଣି ସୁଧାଂଶୁଭାଇ କେଜାଣି ? ତାଙ୍କୁ ସେ ଚିହ୍ନି ପାରିବେ ଟି ? ଏହା ଭିତରେ ଯେ କେତେ ବର୍ଷ ଗଲାଣି । ପାଖାପାଖି ୩୨ ବର୍ଷ । ସୁଧାଂଶୁଭାଇ କଣ ତାଙ୍କୁ ଚିହ୍ନି ପାରିବେ ? ୩୨ବର୍ଷ ତଳେ ସେମାନେ ଯାହାଥିଲେ ଆଜି ତ ଆଉ ସେପରି ନାହାନ୍ତି । ସେଦିନ ସେଥିଲେ ୧୦/୧୧ ବର୍ଷର କିଶୋରୀ ଏବଂ ସୁଧାଂଶୁଭାଇ ୨୦/୨୧ବର୍ଷର ଯୁବକ । ସେ ପଢୁଥିଲେ ସପ୍ତମ ଶ୍ରେଣୀରେ ଆଉ ସୁଧାଂଶୁଭାଇପଢୁଥିଲେ ଏମ୍, ଏ । ସୁଧାଂଶୁଭାଇ ଆସିଥିଲେ ଗ୍ରୀଷ୍ମ ଛୁଟିରେ ରଜତପୁରକୁ, ତାଙ୍କ ଭଉଣୀ ଘରକୁ । ସେ ନିଜେ ବି ଆସିଥିଲେ ବୁଲି ରଜତପୁର । ତାଙ୍କ ଭଉଣୀଙ୍କର ପିଇସୀ ଶାଶୂଙ୍କର ଝିଅ ଆର୍ଯ୍ୟାଭି ଭଉଣୀର ନଣନ୍ଦ ଲେଖାରେ ତାଙ୍କର ପରିଚୟ ହୋଇଥିଲା ସୁଧାଂଶୁଭାଇଙ୍କ ସହିତ । ପିଲାଦିନୁ ସୁଧାଦେବୀ ଜାଣନ୍ତି ସେ ସୁନ୍ଦରୀ, ଖୁବ୍ ସୁନ୍ଦରୀ । ତାଙ୍କୁ ଯିଏ ଦେଖେ ସେ ସୁନ୍ଦରୀ ବୋଲି କହେ । ତାଙ୍କ ରୂପର ପ୍ରଶଂସା କରେ ।

ତେଣୁ ସୁଧାଂଶୁଭାଇଙ୍କୁ ତାଙ୍କ ରୂପ, ତାଙ୍କ ସୌନ୍ଦର୍ଯ୍ୟ ନିଶ୍ଚୟ ଭଲ ଲାଗିଥିବ ସେଇ ପ୍ରଥମ ଦେଖାରେ । ଭାଉଜଙ୍କ ଭାଇ ବୋଲି ସେ ତାଙ୍କୁ ବହୁତ ଥଟ୍ଟା ପରିହାସ କରିଥିଲେ । ପାନ ଭିତରେ ଲଙ୍କା ମରିଚ ଗୁଣ୍ଡ ମିଶାଇ ଖାଇବାକୁ ଦେଇଥିଲେ ଏବଂ ତାହା ଖାଇ ସୁଧାଂଶୁଭାଇଙ୍କର ଆଖିରୁ ପାଣି ବାହାରି ପଡ଼ିଥିଲା । ସମସ୍ତେ ସେଥିପାଇଁ ତାଙ୍କୁ ଗାଳି ଦେଲେ, କିନ୍ତୁ ସୁଧାଂଶୁଭାଇଙ୍କୁ ହଇରାଣ କରିବାରୁ ତାଙ୍କୁ ଭାରି ମଜା ଲାଗିଥିଲା । ସୁଧାଂଶୁଭାଇ ବି ତାଙ୍କୁ ପରିହାସ କରୁଥିଲେ । ପାନଖିଆ ଘଟଣା ପରେ ସେ କହିଲେ, 'ରହ, ତୋତେ ଏମିତି ଗୋଟେ ଜିନିଷ ଖୁଆଇବାକୁ ଦେବି ଯେ ଜୀବନଯାକ ଭୁଲିପାରିବୁ ନାହିଁ ।”

ସୁଧାଦେବୀ ଆଶ୍ଚର୍ଯ୍ୟ ହୋଇଗଲେ, କେମିତି ତାଙ୍କର ଏତେବର୍ଷ ତଳର ପୁରୁଣା କଥା ସବୁ ସ୍ପଷ୍ଟ ମନେ ପଡୁଛି !

ହଠାତ୍ ସୁଧାଂଶୁଭାଇ କହିଲେ, “ତୋ ପାଇଁ ଗୋଟେ ବରଗଛ ଠିକ୍ କରିଛୁ ।”

ସୁଧାଦେବୀଙ୍କୁ କଥାରେ କେହି ପାରନ୍ତି ନାହିଁ । ତାଙ୍କ ଜିଭ ଅଗରେ ଯେପରି ସବୁ କଥାର ଉତ୍ତର ଥାଏ । ସେ କହିଲେ ତୁମପାଇଁ ମୁଁ ଗୋଟେ କନିଅର ଫୁଲ ଠିକ୍ କରିଚି ।

ସୁଧାଂଶୁଭାଇ ତାଙ୍କ କଥାର ଉତ୍ତର ପାଇଗଲେ । ବରଗଛ ଅର୍ଥ ବର, କନିଅର ଅର୍ଥ କନିଆ ।

ସେ ପଚାରିଲେ, 'ତୋ ପରି ତ ।'

ସୁଧାଦେବୀ ଚଟାପଟ୍ କହିଲେ, 'ତୁମ ପରି ତ !'

ଆଉଥରେ ସୁଧାଂଶୁ ଭାଇଙ୍କ ସହିତ ଭେଟ ହୋଇଗଲା ଘରଭିତରେ ଏକା ଏକା । ଆଖ ପାଖରେ ବି କେହି ନଥିଲେ । ସୁଧାଂଶୁଭାଇ କହିଲେ 'ଏ ସୁଧା ଶୁଣ ।'

“କଣ କହୁଛ ! ”

“ପାଖକୁ ଆସ କହିବି ।”

“ମୁଁ ଜାଣିଚି, ଗଲେ ମାରିବ । ପାନରେ ହେଉଁ ଲଙ୍କା ଖାଇଥିଲ ତା ରାଗ ମରିନାହିଁ ।'

ସୁଧାଂଶୁଭାଇ ପ୍ରତିଶ୍ରୁତି ଦେଲେ ସେ ମାରବେ ନାହିଁ । କେବଳ ଗୋଟିଏ କଥା ପଚାରିବେ ।

ସୁଧାଦେବୀ ତାଙ୍କ ପାଖକୁ ଯାଇଥିଲେ । ହଠାତ୍ ତାଙ୍କ ହାତକୁ ଧରି ପକାଇଲେ ସୁଧାଂଶୁଭାଇ । ମୁହୂର୍ତ୍ତିକ ଭିତରେ ତାଙ୍କ ପାଖକୁ ଟାଣିନେଇ ଯାଇଥିଲେ ଏବଂ କଣ ହେଉଛି ସେ ଜାଣିବା ଆଗରୁ ତାଙ୍କ ଗାଲରେ ଗୋଟାଏ ଚୁମା ଦେଇ ପକାଇଥିଲେ ।

ସୁଧାଦେବୀଙ୍କର କଣ ହୋଇଗଲା ସେହି ମୁହୂର୍ତ୍ତରେ ସେ ଜାଣନ୍ତି ନାହିଁ, ତାଙ୍କ ଦେହ ଭିତର ଦେଇ ଗୋଟାଏ ଅନନୁଭୂତ, ଅପୂର୍ବ ଉଲ୍ଲାସର ତଡ଼ିତ ପ୍ରବାହ ସଞ୍ଚରିଗଲା । କେତୋଟି ସେକେଣ୍ଡ ପାଇଁ ସେ ସୁଧାଂଶୁଭାଇଙ୍କ ଦେହକୁ ଆଉଜି ନିଶ୍ଚଳ ନିଷ୍ପନ୍ଦିତ ହୋଇ ରହି ଯାଇଥିଲେ । ତା ପରେ ସେ ତାଙ୍କ ପାଖରୁ ଦଉଡ଼ି ପଳାଇ ଆସିଥିଲେ ଏବଂ ଫ୍ରକ୍‌ରେ ଗାଲକୁ ପୋଛି ପୋଛି କହିଲେ 'ବଜାଙ୍ଗି' ।

ସୁଧାଂଶୁଭାଇଙ୍କର ମୁହଁ ଭୟରେ କଳାକାଠ ପଡ଼ି ଯାଇଥିଲା । ସେ ଥରିଲା କଣ୍ଠରେ ଚୁପ୍ ଚୁପ୍ କରି କହିଲେ, 'ମୋର ଭୁଲ ହୋଇଗଲା କାହାକୁ କହିବୁ ନାହିଁ ।'

'କହିବି ନିଶ୍ଚୟ କହିବି ।' କହି ସେ ଦଉଡ଼ି ପଳାଇଥିଲେ । ପୁଣି କିଛି ସମୟପରେ ସେ ସୁଧାଂଶୁଭାଇଙ୍କ ପାଖକୁ ଯାଇଥିଲେ । ସେତେବେଳେ ମଧ୍ୟ ଆଖ ପାଖରେ କେହି ନଥିଲେ । ସେ ଏକା ବସିଥିଲେ ଅବସନ୍ନ ହୋଇ । ସେ ନିଶ୍ଚୟ ବହୁତ ଡରି ଯାଇଥିଲେ । ତଥାପି ସେ କହିଲେ, 'ଏ ସୁଧା ଶୁଣିଯା ।' ସେ ଚାହୁଁ-ଥିଲେ ତାଙ୍କୁ ଫୁସୁଲେଇବେ ସେ ଯେପରି କାହାକୁ ସେ କଥା ନ କହନ୍ତି ।

'ମୁଁ ଯିବି ନି' କହି ମଧ୍ୟ ସେ ଧୀରେ ଧୀରେ ତାଙ୍କ ପାଖ ପର୍ଯ୍ୟନ୍ତ ଯାଇଥିଲେ । ଇଚ୍ଛା କରିଥିଲେ ସୁଧାଂଶୁଭାଇ ତାଙ୍କୁ ଧରି ପାରିଥାନ୍ତେ । ସେ ମଧ୍ୟ ଚାହୁଁଥିଲେ, ସୁଧାଂଶୁଭାଇ ପୁଣି ତାଙ୍କୁ ଧରନ୍ତୁ ଏବଂ ପୁଣି ପୁଣି ଏବଂ ବହୁବାର ସେହି ଅନନ୍ୟସ୍ୱାଦ, ନିବିଡ଼ ଅଧର ସ୍ପର୍ଶ ତାଙ୍କୁ ଦିଅନ୍ତୁ । ତାଙ୍କୁ ଛାତି ଉପରେ ଭିଡ଼ି ଧରନ୍ତୁ— ଯେମିତି ସେ ଦେଖିଥିଲେ ନୂଆ ବୋଉଙ୍କୁ ଭାଇ ଭିଡ଼ି ଧରିଥିଲେ । କିନ୍ତୁ ସୁଧାଂଶୁଭାଇ ବହୁତ ଡ଼ରକୁଳା । ସେ ବହୁତ ଡରିଯାଇଥିଲେ । ସେ ତାଙ୍କୁ ଧରିବାକୁ ଟିକିଏ ବି ଚେଷ୍ଟା କରି ନଥିଲେ । ବରଂ କହୁଥିଲେ ଚୁପ୍‌କରି, 'କାହାକୁ କହିବୁ ନାହିଁ ।'

ତାଙ୍କୁ ମିଛରେ ଡ଼ରାଇବାକୁ ସେ କହିଲେ, 'କହିବି, ନିଶ୍ଚୟ କହିବି ।'

ସେଡିନଙ୍କ ବେଳେ ସେ ଆଡକୁ ଆଉ କେହି ଆସୁଥିବାର ଦେଖାଗଲା। ସେ ତେଣୁ ଚାଲି ଆସିଲେ।

ତା ପରଦିନ ସୁଧାଂଶୁଭାଇ ତାଙ୍କ ଗାଁକୁ ଫେରିଗଲେ। ହଠାତ୍ ବିବାହକଥା ଠିକ୍ କଲେ—ବୋଧହୁଏ ଭୟରେ। ତା ପରେ ତାଙ୍କ ସହିତ ଆଉ କେବେ ଦେଖା ହୋଇ ନାହିଁ।

ସବୁ କଥା ଗୋଟି ଗୋଟି କରି କେମିତି ମନେପଡ଼ିଲା ଭାବି ଆଶ୍ଚର୍ଯ୍ୟ ହେଲେ ସୁଧା ଦେବୀ। ସେ ଉଠିଯାଇ ଡ୍ରେସିଂ ଟେବୁଲ୍ ଦର୍ପଣ ସମ୍ମୁଖରେ ଠିଆ ହେଲେ ଏବଂ ତାଙ୍କ ଗାଲରେ ହାତ ମାରିଲେ। ଦର୍ପଣରେ ଦେଖିଲେ ଗାଲରେ କିଛି ଚିହ୍ନ ନାହିଁ। ୪୦ ବର୍ଷ ପାର ହେବା ପରେ ବି ତାଙ୍କ ଦେହରେ ୩୦ ବର୍ଷର ଲାବଣ୍ୟ ଅଛି ବୋଲି ତାଙ୍କର ସ୍ୱାମୀ ଓ ସ୍ୱାମୀଙ୍କର ବନ୍ଧୁମାନେ କହନ୍ତି। ସେ ଦର୍ପଣରେ ନିଜର ସେଇ ସୌନ୍ଦର୍ଯ୍ୟକୁ ନିରୀକ୍ଷଣ କରି ଖୁସୀ ହେଲେ ଏବଂ ଭ୍ରୂକୁ ଟିକିଏ ସଜାଡ଼ି ଦେଲେ।

ଦର୍ପଣ ପାଖରୁ ଆସିବା ବେଳେ ସେ ମନକୁ ମନ କହିଲେ, ସୁଧାଂଶୁ ଭାଇଟା ବଡ଼ ନିର୍ବୋଧ ଥିଲେ, ବଡ଼ ଡରକୁଳା ଥିଲେ। ଏବେ କେମିତି ଅଛନ୍ତି କେଜାଣି! ସେ ବୋଧହୁଏ ଅତି ନୀରବରେ ନିଜକୁ ନିଜେ କହିଲେ, 'ମୁଁ ତାଙ୍କ ଭୟ ଛଡ଼େଇ ଦେବି ନା। ପୁରୁଷ ପଣରେ ଭୟ କଣ !'

ସେ ଭାବିଲେ ଦେଖାହେଲା ମାତ୍ରେ ସେ ତାଙ୍କୁ କହିବେ "କେମିତି ଅଛନ୍ତି ଦେଖିଛ ବାବୁ।"

ସୁଧାଂଶୁଭାଇ ସେଡିନ କଥାରେ ନିଶ୍ଚୟ ତାଙ୍କୁ ଚାହିଁ ପକାଇବେ। ଏବଂ କହିବେ, 'କରେ କଳଅର ଫୁଲ, କେମିତି ଅଛୁ !"

—୨—

ଗୋଟିଏ ଦିନ ଭିତରେ ସବୁ ଏପଟ ସେପଟ ହୋଇଗଲା। ଯାହାହେଲା ସେଥିରେ ପରିଷଦର ସଭ୍ୟମାନଙ୍କର ଆନନ୍ଦ କହିଲେ ନ ସରେ। ପ୍ରବାସୀ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିଷଦ ଦିନକ ଭିତରେ କେତେ ଯେ ବଡ଼ ହୋଇଗଲା ! ତାର ସଭାପତି ଓ ସମ୍ପାଦକଙ୍କୁ ଦେଖା କରିବାକୁ ରାଜ୍ୟ ସାହିତ୍ୟ ଏକାଡ଼େମୀର ସଭାପତି, ହିନ୍ଦୀ ସାହିତ୍ୟ ପରିଷଦର ସଭାପତି ଯେ କି ନିଜେ ଜ୍ଞାନପୀଠ ପୁରସ୍କାର

ଦ୍ୱାରା ସମ୍ମାନିତ, ବଙ୍ଗୀୟ ସାହିତ୍ୟ ସମିତିର ସଂପାଦକ, ସ୍ଥାନୀୟ କର୍ପୋରେସନର ମେୟର ଶେଷରେ ଖୋଦ ମୁଖ୍ୟମନ୍ତ୍ରୀଙ୍କର ବାର୍ତ୍ତାବହ ହାଜର । ସୁଧାଂଶୁ ରାୟଙ୍କୁ ରାଜ୍ୟର ସମ୍ମାନିତ ଅତିଥି ଭାବରେ ଗ୍ରହଣ କରାଯିବ । ସେ ରାଜଭବନରେ ରହିବେ, ସନ୍ଧ୍ୟାରେ ତାଙ୍କୁ କର୍ପୋରେସନ୍ ପକ୍ଷରୁ ସମ୍ମାନିତ କରାଯିବ, ସେଥିରେ ମୁଖ୍ୟମନ୍ତ୍ରୀ ଗଭର୍ଣ୍ଣର, ମେୟର ସମସ୍ତେ ଉପସ୍ଥିତ ରହିବେ ତାଙ୍କର ଯିବା ଆସିବା ପାଇଁ ସରକାରୀ କାର୍ ରହିବ । ଉଚ୍ଚ ସରକାରୀ ଅଫିସର ମାନେ ତାଙ୍କର ତତ୍ତ୍ୱାବଧାନ କରିବେ ଇତ୍ୟାଦି ବିପୁଳ ଆୟୋଜନ । ଯେତିକ ସମୟ ପ୍ରବାସୀ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିଷଦର ବାର୍ଷିକୋତ୍ସବ ପାଇଁ ଆବଶ୍ୟକ, କେବଳ ସେତିକ ସମୟ ପାଇଁ ସେ ସେଠାକୁ ଆସିବେ । ତାଙ୍କର ଯିବା ଆସିବା ପାଇଁ ଚିନ୍ତାର କାରଣ ନାହିଁ। ଷ୍ଟେଟକାର୍ ସେଥିପାଇଁ ପ୍ରସ୍ତୁତ ହୋଇ ରହିଥିବ । ଷ୍ଟେସନ୍‌ରେ ତାଙ୍କୁ ସାଂସ୍କୃତିକ ବିଭାଗ ମନ୍ତ୍ରୀ, ମେୟର ଓ ଅନ୍ୟମାନେ ରିସିଭ୍ କରିବେ । ଷ୍ଟେସନରୁ ସେ ସିଧା ରାଜଭବନକୁ ଯିବେ । ସେଠାରେ ଗଭର୍ଣ୍ଣରଙ୍କ ସହିତ ବ୍ରେକ୍ ଫାଷ୍ଟ, ଦିନ ଦଶଟା ବେଳେ ବିଶ୍ୱବିଦ୍ୟାଳୟରେ ତାଙ୍କ ସମ୍ମାନାର୍ଥେ ସଭା । ୧୨ଟା ବେଳେ ହିନ୍ଦୀ ସାହିତ୍ୟ ପରିଷଦରେ ସଭା, ସାଢ଼େ ଗୋଟାଏ ବେଳେ ରାଜଭବନରେ ଲଞ୍ଚ, ୩ଟା ବେଳେ ବଙ୍ଗୀୟ ସାହିତ୍ୟ ସମିତିରେ ସଭା, ୪ଟା ବେଳେ ପ୍ରବାସୀ ଓଡ଼ିଆ ସାହିତ୍ୟ ସଂସ୍କୃତି ପରିଷଦର ବାର୍ଷିକୋତ୍ସବ । ୭ଟା ବେଳେ କର୍ପୋରେସନ୍ ହଲ୍‌ରେ ନାଗରିକ ସମ୍ବର୍ଦ୍ଧନା । ରାତିରେ ମୁଖ୍ୟମନ୍ତ୍ରୀଙ୍କ ପକ୍ଷରୁ ଆୟୋଜିତ ଭୋଜି ସଭାରେ ରାତି ଭୋଜନ । ତା ପରଦିନ ସକାଳ ମେଲ୍‌ରେ ପ୍ରତ୍ୟାବର୍ତ୍ତନ ।

ପ୍ରୋଗ୍ରାମଟାକୁ ରାଗରେ ଫୋପାଡ଼ି ଦେଲେ ସୁଧା ଦେବୀ । ସେ କହିଲେ, 'ମୁଁ ଏହାର ପ୍ରତିବାଦ କରୁଛି । ଏପରି ପ୍ରୋଗ୍ରାମ କରିବାକୁ ଆପଣ ମାନେ କିଏ ? ଗଭର୍ଣ୍ଣର, ମୁଖ୍ୟମନ୍ତ୍ରୀ, ମେୟର, ସାହିତ୍ୟ ଏକାଡ଼େମୀ ହିନ୍ଦୀ ସାହିତ୍ୟ ପରିଷଦ, ବଙ୍ଗୀୟ ସାହିତ୍ୟ ସମିତି ସମସ୍ତେ କେଉଁଠି ଥିଲେ ଆଜିଯାଏ ? ଆମେ ତ ନିମନ୍ତ୍ରଣ କରି ଡାକିଲୁ । ସେମାନେ କିଏ ସେ ଏଥିରେ ଇଣ୍ଟରଫିଅର କରିବାକୁ ।'

କିନ୍ତୁ ସମସ୍ତେ ବିନୟର ସହିତ ନିଜେ ଆସି ପରିଷଦର ସଭାପତିଙ୍କର ଅନୁମତି ଯେ ମାଗି ନେଇଛନ୍ତି—

'ସଭାପତି ଅନୁମତି ଦେବାକୁ କିଏ ?' ରାଗରେ ଫାଟି ପଡ଼ିଲେ ସୁଧା ଦେବୀ ।

ସାହିତ୍ୟ ଏକାଡ଼େମୀର ସଭାପତି ଯେ ନିଜେ ଟେଲିଫୋନ୍ କରି ସୁଧାଂଶୁ ରାୟଙ୍କର ସମ୍ମତି ସଂଗ୍ରହ କରିଛନ୍ତି—

'ଖାଲି ମିଛ, ସବୁ ଠକାମି, ପ୍ରତାରଣା ! ସମସ୍ତେ ସ୍ୱାର୍ଥପର ।' ଆହୁରି ଆହୁରି କଡ଼ା ଓ ଖରାପ ଭାଷା ପ୍ରୟୋଗ କରିବାକୁ ଉଦ୍ୟତ ହେଉଥିଲେ ସୁଧାଦେବୀ । କିନ୍ତୁ ପାରିଲେ ନାହିଁ । ସେ ଆଉ ଗୁପ୍ତ କୋହ ସମ୍ଭାଳି ପାରିଲେ ନାହିଁ । ସୁଁ ସୁଁ ହୋଇ କାନ୍ଦି ଉଠିଲେ ।

କିନ୍ତୁ ନିଜକୁ ସମ୍ବରଣ କରି ଦେଇ ସେ କହିଲେ ଠିକ୍ ଅଛି । କିନ୍ତୁ ମୋର ପ୍ରୋଗ୍ରାମ ବାଦ୍ ଯିବ ନାହିଁ । ତାର ଅର୍ଥ ପରିଷଦର ବାର୍ଷିକୋତ୍ସବ ପରେ ସୁଧାଂଶୁ ରାୟ ସୁଧା ଦେବୀଙ୍କ ଘରକୁ ଯିବେ । ଆଉ କେହି ଯାଇ ପାରିବେ ନାହିଁ ତାଙ୍କ ସାଙ୍ଗରେ । କେବଳ ସେ ଏକା, ଯେତେ ସମୟ ଇଚ୍ଛା ସେ ତାଙ୍କୁ ଘରେ ରଖିବେ । ହେଉ ପଛେ ରାଷ୍ଟ୍ରୀୟ ସମ୍ମାନ ଦେବାରେ ଡ଼େରି । ବାହାଘର ଲଗ୍ନ ତ ଗଡ଼ି ଯାଉନି ।

ମୁଖ୍ୟମନ୍ତ୍ରୀ ଓ ମେୟର ଏ ପ୍ରସ୍ତାବକୁ ଗ୍ରହଣ କରିନେଲେ । ଅବଶ୍ୟ ପରିଷଦର ସଭାପତି ପ୍ରତିଶ୍ରୁତି ଦେଲେ ଯେ ପରିଷଦର ବାର୍ଷିକୋତ୍ସବ କାର୍ଯ୍ୟକ୍ରମକୁ ଟିକିଏ ସଂକ୍ଷିପ୍ତ କରି ଦିଆଯିବ । ଯେପରି କି କର୍ପୋରେସନ୍ ହଲ୍‌ରେ ସଭା ଠିକ୍ ସମୟରେ ହୋଇ ପାରିବ ।

—ତିନି—

ନିର୍ଦ୍ଦିଷ୍ଟ ଦିନ ।

ସେଦିନ ପ୍ଲାଟଫର୍ମରେ ବିପୁଳ ଜନ ସମାଗମ ।

ଟ୍ରେନ୍ ଦେଢଘଣ୍ଟା ବିଳମ୍ବରେ ପହଞ୍ଚିଲା । ତଥାପି ସମସ୍ତେ ଧୈର୍ଯ୍ୟର ସହିତ ଅପେକ୍ଷା କରିଥିଲେ ।

ଟ୍ରେନ୍‌ର ଫାଷ୍ଟକ୍ଲାସ କମ୍ପାର୍ଟମେଣ୍ଟ ଆଗରେ ଭାରି ଭିଡ଼ । ଧୀରେ ଧୀରେ ଆସି ଦ୍ୱାର ଦେଶରେ ଉଭାହେଲେ ସୁଧାଂଶୁ ରାୟ । 'ସୁଧାଂଶୁ ରାୟ' 'ସୁଧାଂଶୁ ରାୟ' କହି ସମସ୍ତେ ପରସ୍ପରର ଦୃଷ୍ଟି ଆକର୍ଷଣ କଲେ ।

ସମସ୍ତ ପ୍ରଗଲ୍‌ଭତା ହରାଇ ଶାନ୍ତ ହୋଇ ଯାଇଥିଲେ ସୁଧା ଦେବୀ । ତାଙ୍କୁ ବୋଧ ହେଉଥିଲା, "ସମସ୍ତେ ତାଙ୍କୁ ବଞ୍ଚନା ଓ ପ୍ରବଞ୍ଚନା କରି ତାଙ୍କରି ଐଶ୍ୱର୍ଯ୍ୟରେ ଉଲ୍ଲାସ କରୁଛନ୍ତି ।"

ସେ ଦେଖିଲେ ସାମାନ୍ୟ ସ୍ଥୂଳ, ପକ୍ୱକେଶ, ଧୋତି ପଞ୍ଜାବୀ ପରିହିତ ଲୋକଟିଏ ହାତଯୋଡ଼ି ସମସ୍ତଙ୍କୁ ନମସ୍କାର କରି ଧୀରେ ଧୀରେ ଟ୍ରେନ୍‌ରୁ ଅବତରଣ

କଲେ । ତାପରେ ମାଳ୍ୟ ଦାନର ପାଳି—ଜଣକ ପରେ ଜଣେ । ପ୍ରଥମେ ସାଂସ୍କୃତିକ ବିଭାଗ ମନ୍ତ୍ରୀ, ତାପରେ ମେୟର, ତାପରେ ବିଶ୍ୱବିଦ୍ୟାଳୟର କୁଳପତି, ତା ପରେ ରାଜ୍ୟ ସାହିତ୍ୟ ଏକାଡେମୀର ସଭାପତି, ତା ପରେ ପ୍ରବାସୀ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିଷଦର ସଭାପତି, ତାପରେ ହିନ୍ଦୀ ସାହିତ୍ୟ, ବଙ୍ଗୀୟ ସାହିତ୍ୟ, ତେଲୁଗୁ ସାହିତ୍ୟ, ଅସମୀୟା ସାହିତ୍ୟ, ଗୁଜୁରାଟୀ ସାହିତ୍ୟ........ ପରିଷଦ, ତା ପରେ ଲ୍ରବ ପରିଷଦ ଇତ୍ୟାଦି ଲମ୍ବାଧାଡ଼ି ଶେଷରେ ଶ୍ରେଷ୍ଠ ଫୁଲହାରଟିଏ ଧରି ଠିଆ ହୋଇଥିଲେ ସୁଧାଦେବୀ । ତାଙ୍କ ସୁଧାଂଶୁଭାଇଙ୍କୁ ସେ ସମସ୍ତ ବାଧା ସତ୍ତ୍ୱେ ନିଜର କରିନେଇ ଯିବେ ଏପରି ଏକ ବିଶ୍ୱାସ ତାଙ୍କ ମନରେ ଦୃଢ଼ ହୋଇ ରହିଥିଲା ।

ପୁଷ୍ପମାଳ୍ୟ ଗ୍ରହଣ କରିବାକୁ ମୁଣ୍ଡ ନୁଆଁଇ ନୁଆଁଇ ବୋଧହୁଏ କ୍ଳାନ୍ତ ହୋଇ ପଡ଼ିଥିଲେ ସୁଧାଂଶୁ ରାୟ ।

ଧୀରେ ଧୀରେ ସୁଧାଦେବୀ ତାଙ୍କ ଆଡକୁ ଆଗେଇ ଗଲେ । ତାଙ୍କ ବୁକୁ ଭିତରେ ଅଜସ୍ର କମ୍ପନ ।

ସୁଧାଂଶୁ ରାୟଙ୍କୁ ଅନ୍ୟନେ ଦେଖିଥିଲେ ସେ ନିଜେ କଣ ଚିହ୍ନି ପାରିଥାନ୍ତେ ! କେତେ ଯେ ପରିବର୍ତ୍ତନ ହୋଇଯାଇଛି ଏହାଭିତରେ । ସେଇ ଲମ୍ବା ପତଳା ଗୋରା ସୁନ୍ଦର ଚେହେରାରେ କି ଆମୂଳ ପରିବର୍ତ୍ତନ ହୋଇ ଯାଇଛି ! ସୁଧାଂଶୁ ଭାଇ ମଧ୍ୟ ତାଙ୍କୁ ଚିହ୍ନି ପାରିବେ ତ ! ୩୨ ବର୍ଷର ବ୍ୟବଧାନ କିଛି କମ୍ କଥା ନୁହେଁ । କିନ୍ତୁ ସୁଧାଂଶୁଭାଇଙ୍କ ସହିତ ତାଙ୍କର ପରିଚୟ ହୃଦୟର, ମନର—ସେଠାରେ ସମୟର ପରିବର୍ତ୍ତନ କାଟ କରେନା ।

ସୁଧାଦେବୀ ଆଗେଇ ଗଲେ ।

ମାଳ୍ୟ ଗ୍ରହଣ କରିବାକୁ ସୁଧାଂଶୁରାୟ ମୁଣ୍ଡ ନୁଆଁଇ ଦେଲେ ।

ସୁଧାଦେବୀ ମାଳାଟି ତାଙ୍କ ବେକରେ ଲମ୍ବେଇ ଦେଲେନାହିଁ । ମଧୁର ସ୍ମିତ ହସି ପଚାରିଲେ, 'ସୁଧାଂଶୁଭାଇ, ମତେ ଚିହ୍ନି ପାରୁଛ ତ"

'ସୁଧାଂଶୁରାୟ ମୁଣ୍ଡଟେକି ତାଙ୍କୁ ଚାହିଁଲେ ସପ୍ରଶ୍ନ ଦୃଷ୍ଟିରେ ।'

"ମୁଁ ସୁଧା, ତୁମ ସୁରେଖାର ନଣନ୍ଦ—"

"ସୁରେଖାର ନଣନ୍ଦ ?"

"ହଁ, ମୁଁ ତାଙ୍କ ପିଇସୀ ଶାଶୁଙ୍କ ଝିଅ ସୁଧା—ଆମ ଘର ଅଙ୍ଗାରପଡ଼ା ।"

"ଓଃ କଣ କହିଲ ତୁମ ନା ।"

"ସୁଧା ।"

"ତୁମେ ଏଠି କଣ କରୁଚ ?"

କିଏ ଜଣେ ପାଖରେ ଥିବା ଲୋକ କହିଲା, 'ସେ ପରିଷଦର ସହକାରୀ ସମ୍ପାଦିକା । ଆଉ ଜଣେ କିଏ କହିଲା, ତାଙ୍କ ସ୍ୱାମୀ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରେ ଆସିଷ୍ଟାଣ୍ଟ ଲାଇବ୍ରେରିଆନ୍ ।

"ଆଚ୍ଛା"—କହି ସୁଧାଂଶୁ ମୁଣ୍ଡ ନୁଆଁଇ ଦେଲେ । ସୁଧାଦେବୀଙ୍କ ଥରିଲା ହାତ ଆଗକୁ ଲମ୍ବିଗଲା । ସେ ତାଙ୍କ ବେକରେ ମାଲ୍ୟଦାନ କଲେ ।

ପରେ ପରେ ଫାଷ୍ଟଡ଼କ ବିଭାଗ ମନ୍ତ୍ରୀଙ୍କ ସହିତ ସୁଧାଂଶୁରାୟ କାର୍‌ରେ ଚାଲିଗଲେ ରାଜଭବନକୁ ।

ସନ୍ଧ୍ୟାରେ ପ୍ରୋଗ୍ରାମ ବଦଳିଗଲା ।

ସୁଧାଦେବୀ କହିଲେ, ମୋ ପ୍ରୋଗ୍ରାମ କ୍ୟାନ୍‌ସେଲ୍‌ଡ଼୍ । ମୁଁ ଅସୁସ୍ଥ' .

ତାଙ୍କ ସ୍ୱାମୀ କହିଲେ, 'ଏପରି କଣ ହୁଏ ।'

"ହଁ ହୁଏ । ଅସୁସ୍ଥ ହେଲେ ସବୁ ହୁଏ । ତୁମେ କହି ଦେଇ ଆସ ମୋର ପ୍ରୋଗ୍ରାମ କ୍ୟାନ୍‌ସେଲ୍‌ଡ଼୍ ।

ନିର୍ଦ୍ଦିଷ୍ଟ ସମୟରେ ଥିବା ଅନ୍ୟାନ୍ୟ କାର୍ଯ୍ୟକ୍ରମମାନ ସୁରୁଖୁରୁରେ ଚାଲିଥିବା ବେଳେ ସୁଧା ଦେବୀ ଅସହ୍ୟ ଯନ୍ତ୍ରଣାରେ କାତର ହେଉଥିଲେ !

ସେ କହୁଥିଲେ ତାଙ୍କ ମୁଣ୍ଡ ବିନ୍ଧୁଛି । ତାଙ୍କ ମୁଣ୍ଡ ଭିତରଟା ଫାଟି ଯାଉଛି ।

କିନ୍ତୁ ପ୍ରକୃତରେ ତାଙ୍କ ହୃଦୟ ଭିତରଟା ଯେପରି ଫାଟିଯାଇ ଖଣ୍ଡବିଖଣ୍ଡ ହୋଇ ଯାଉଥିଲା ।

ସେ ଯନ୍ତ୍ରଣାରେ ଛଟପଟ ହେଉଥିଲେ । କେତେବେଳେ ବସୁଥିଲେ, କେତେବେଳେ ଉଠୁଥିଲେ, କେତେବେଳେ ଶୋଇ ପଡୁଥିଲେ—ମର୍ମରେ ଭେ ଭେ ହୋଇ କାନ୍ଦୁଥିଲେ ।

ତାଙ୍କର ସ୍ୱାମୀ ପ୍ରବଳ ଇଚ୍ଛା ସତ୍ତ୍ୱେ କୌଣସି ସଭା ସମିତିରେ ଯୋଗ ନ ଦେଇ ତାଙ୍କର ଯତ୍ନ ନେଉଥିଲେ । ତାଙ୍କ ମୁଣ୍ଡରେ ଇଉଡ଼ଥେରିଆ ଲଗାଇ ଦେଉଥିଲେ । ବେଳେ ବେଳେ ମୁଣ୍ଡ ଚିପି ଦେଉଥିଲେ । ବେଳେ ବେଳେ ବୁକୁ ଉପରେ ଧରି ମୁଣ୍ଡ ଆଉଁସି ଦେଉଥିଲେ ।

କିନ୍ତୁ ସୁଧା ଦେବୀଙ୍କର ଯନ୍ତ୍ରଣା ଉପଶମ ହେବାର କୌଣସି ଲକ୍ଷଣ ନଥିଲା ।

ରାତି ଦଶଟା ବେଳେ ରେଡ଼ିଓରେ ସ୍ଥାନୀୟ ସମ୍ବାଦରେ ସୁଧାଂଶୁ ରାୟଙ୍କର ନାଗରିକ ସମ୍ବର୍ଦ୍ଧନାର ସମ୍ବାଦ ପ୍ରସାରିତ ହେବା ମାତ୍ରେ ସୁଧା ଦେବୀ ପାଟିକରି ଉଠିଲେ, ବନ୍ଦ କର ରେଡ଼ିଓ, ବନ୍ଦ କର । ଏ ଘରେ ବଞ୍ଚିବାକୁ ଦେବ ନାହିଁ କି ?

ତାଙ୍କର ସ୍ୱାମୀ ରେଡ଼ିଓ ବନ୍ଦ କରି ଦେଇ ଆସିଲେ ।

ତା ପରେ ସୁଧା ଦେବୀ ପ୍ରଳାପ କରିବା ପରି କହି ଚାଲିଲେ, "ଓଃ ଯେଉଁ ମଣିଷ ତ ! କବି ନା ଛେନା ଗୁଡ଼ । ଜ୍ଞାନପୀଠ ପୁରସ୍କାର ପାଇଗଲା ତ କଣ ଟା ହୋଇଗଲା । ଯେଉଁ କବିତା ତ ଗୁଣ୍ଡି । ଗୋଟିଏ ଧାଡ଼ିର ଅର୍ଥ ବୁଝିବା ତ କଷ୍ଟ । କଣ ନା ଆଧୁନିକ କବିତା । ଆଉ ସେଥିପାଇଁ ଏତେ ଗର୍ବ, ଏତେ ଅହଙ୍କାର । ମୁହଁ ଉପରକୁ ହୋଇଯାଇଛି ଯେ ମଣିଷ ଚିହ୍ନି ପାରୁନି । ଏତିକିରେ ତ ଏତେ ସ୍ପର୍ଦ୍ଧା ! ଆଉ ବେଶୀ ହୋଇଥିଲେ ଚନ୍ଦ୍ର ସୂର୍ଯ୍ୟ ମାନନ୍ତା ନାହିଁ ପରା । ମୋ ଆଗରେ ଫୁଟାଣି ଚଳିବ ନାହିଁ ବାବା । ମୁଁ ତୁମକୁ ଠିକ୍ ଜାଣିଚି । ଖ୍ରମ ବଳ କ୍ଲନ୍ତୀଙ୍କୁ ଜଣା । କବି ନା ଫବି, ପାଜି, ଚରିତ୍ର ହୀନ ।"

ତାର କିଛି ସମୟ ପରେ ଅବଶ୍ୟ ସୁଧା ଦେବୀ ଭୋ ଭୋ ହୋଇ କାନ୍ଦି ଉଠିଲେ ।

ତାଙ୍କ ସ୍ୱାମୀ ତାଙ୍କୁ ବୁକୁ ଉପରେ ଭିଡ଼ି ଧରିଲେ, ମୁଣ୍ଡକୁ ଆଉଁସି ଦେଇ ସାନ୍ତ୍ୱନା ଦେଲେ, 'ଛି, କାନ୍ଦ ନାହିଁ, କାନ୍ଦ ନାହିଁ—"

ସୁଧା ଦେବୀ ଧୀରେ ଧୀରେ ଶାନ୍ତ ହୋଇଗଲେ ଓ କିଛି ସମୟ ପରେ ସ୍ୱାମୀଙ୍କ କୋଳରେ ମୁଣ୍ଡ ରଖି ଗଭୀର ନିଦରେ ଶୋଇ ପଡ଼ିଲେ ।

କଟକ

୫ । ୩ । ୮୦